# ବିଦ୍ୟାରତ୍ନ ସ୍ମରଣେ



ଜନ୍ମ : ୧୮୬୭ ମୃତ୍ୟୁ : ୧୯୨୩

ତୃତୀୟ ସଂଖ୍ୟା : ସଂକଳନ

ବିଦ୍ୟାରତ୍ନ ସ୍ମରଣ କମିଟି, ଓଡ଼ିଶା

# ବିଦ୍ୟାରତ୍ନ ସ୍ମରଣେ

ସଂକଳନ ବିଶେଷାଙ୍କ

ମୁଖ୍ୟ ସଂପାଦକ :

**ଶ୍ରୀ ପଠାଣି ପଟ୍ଟନାୟକ**

କେନ୍ଦୁଝର କଲୋନୀ,

କନିକା ରୋଡ୍, କଟକ-୭୫୩୦୦୮



ପ୍ରକାଶକ :

**ରବି ଦାଶ**

ସଂପାଦକ

ବିଦ୍ୟାରତ୍ନ ସ୍ମରଣ କମିଟି, ଓଡ଼ିଶା

ବାଖରାବାଦ, କଟକ-୭୫୩୦୦୨

ପ୍ରାପ୍ତିସ୍ଥାନ :

ବିଦ୍ୟାରତ୍ନ ପ୍ରକାଶନ

ତାରପୁର, ଜଗତସିଂହପୁର-୭୫୪୧୩୩

ମୁଦ୍ରଣ :

ଗ୍ରାମସେବକ ସମବାୟ ପ୍ରକାଶନ ଲିଃ

ବାଖରାବାଦ, କଟକ-୭୫୩୦୦୨

ପ୍ରକାଶ କାଳ : **ଡିସେମ୍ବର ୨୦୦୦**

ମୂଲ୍ୟ : **ପଚିଶ ଟଙ୍କା ମାତ୍ର**

# ସୂଚୀ

# କୃତଜ୍ଞତା

ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା, ରେମୁଣା ୧୦୪ ବର୍ଷ ତଳେ ପ୍ରକାଶ ପାଇଥିବା 'ରାଜନୀତି' ଶୀର୍ଷକ ପୁସ୍ତକଟି ସାଇତି ରଖି ବର୍ତ୍ତମାନ ଆମକୁ ପ୍ରକାଶ କରିବା ପାଇଁ ଅନୁମତି ଦେଇଛନ୍ତି । ଶ୍ରୀମତି ଶାନ୍ତି ମିଶ୍ର 'ପଟୋଳ ଚାଷ' 'ନାଶପତ୍ର' 'ସ୍ୱର୍ଗ ନର୍କ ଦର୍ଶନ' ଆଦି ସଂପୂର୍ଣ୍ଣ ୩ ଖଣ୍ଡ ପୁସ୍ତକ ଏହି ସଂକଳନରେ ପ୍ରକାଶ ପାଇଁ ଯୋଗାଇଛନ୍ତି । ଶ୍ରୀ ଶରତଚନ୍ଦ୍ର ବିଶ୍ୱାଳ ଓ ଶ୍ରୀମତୀ ସବିତା ମହାପାତ୍ର 'ଲାଟଦର୍ଶନ' ଖଣ୍ଡକାବ୍ୟ 'ଗୋ-ମହାତ୍ମ୍ୟ', 'ଜିହ୍ୱାସୁଖ ଓ ଜୀବନ' ଆଦି ବିଦ୍ୟାରତ୍ନଙ୍କ ଅମୂଲ୍ୟ ପୁସ୍ତକ ଗୁଡିକ ଏହି ସଙ୍କଳନରେ ପ୍ରକାଶ ପାଇଁ ଯୋଗାଇ ଦେଇଛନ୍ତି ।

ଏହି ଅବସରରେ ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା, ଶ୍ରୀମତୀ ଶାନ୍ତି ମିଶ୍ର, ଶ୍ରୀ ଶରତଚନ୍ଦ୍ର ବିଶ୍ୱାଳ ଓ ଶ୍ରୀମତୀ ସବିତା ମହାପାତ୍ରଙ୍କୁ ଏହି ସଂକଳନ ପ୍ରକାଶ ପାଇଁ ସକ୍ରିୟ ସହଯୋଗ କରିଥିବାରୁ ବିଦ୍ୟାରତ୍ନ ସ୍ମରଣ କମିଟି ପକ୍ଷରୁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛୁ ।

ସଂପାଦକ

# ମୁଖବନ୍ଧ

## ସାମ୍ବାଦିକତା ଓ ଜାତୀୟ ଚେତନା

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ହେଉଛି ଓଡ଼ିଶା ଭୂଖଣ୍ଡରେ ଜାତୀୟ ଚେତନାର ସମୟ । ପରାଧୀନତା, ଦାରିଦ୍ର୍ୟ, ଅଶିକ୍ଷା, ଅନଗ୍ରସରତା ଏବଂ ସର୍ବୋପରି ହୀନମନ୍ୟତାର ମ୍ଳାନକର ପରିବେଶ ମଧ୍ୟରେ ଓଡ଼ିଶାର ଅଧିବାସୀ ହିନ୍ନସନ୍ନ ହୋଇ ଏକପ୍ରକାର ଅସ୍ତିତ୍ୱଚ୍ୟୁତ ଜାତି ଭାବରେ ଜୀବନଯାପନ କରୁଥିଲାବେଳେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଓ ସମ୍ବାଦପତ୍ରର ପ୍ରକାଶ ଓଡ଼ିଆଙ୍କ ମଧ୍ୟରେ ଗଭୀର ଭାବାବେଗ ଜନ୍ମାଇ ପାରିଥିଲା । ଏହିକାଳର ଜଣେ ସ୍ମରଣୀୟ ସାମ୍ବାଦିକ ଓ ସମ୍ପାଦକ ଥିଲେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ପୂର୍ବତନ ଗଡଜାତ ବାମଣ୍ଡା ଏବଂ ଗଞ୍ଜାମର ବିଭିନ୍ନ ଜମିଦାରୀ ଅଞ୍ଚଳରେ ଏବଂ ଶେଷ ଜୀବନରେ କଟକ ସହରରେ ସମ୍ବାଦପତ୍ର ସମ୍ପାଦନାରେ ସେ ଗ୍ରହଣ କରିଥିଲେ ପ୍ରମୁଖ ଭୂମିକା । ଆଜିକାଲିର ସମ୍ପାଦକ ଏବଂ ସାମ୍ବାଦିକମାନଙ୍କ ପରି ସାମ୍ବାଦିକତା ତାଙ୍କର ଜୀବନଜୀବିକାର ପେଶା ଥିଲା ବୋଲି କହିହେବ ନାହିଁ । ତାହା ଥିଲା ତାଙ୍କର ଜୀବନବ୍ୟାପୀ ସାଧନାର ଏକ ମିଶନ । ଓଡ଼ିଆ ଭାଷା କିପରି ପ୍ରାଣପ୍ରତିଷ୍ଠା ଲାଭ କରିବ, ଓଡ଼ିଆ ଜାତି କିପରି ଅଗ୍ରସର ହେବ, ଓଡ଼ିଶାର ଜାତୀୟଭାବନା କିପରି ଉନ୍ମେଷିତ ହେବ, ଏହି ଆଭିମୁଖ୍ୟ ରଖି ସେ ଲେଖନୀ ଚାଳନାରେ ବ୍ରତୀ ହୋଇଥିଲେ ।

କୁହାଯାଇଛି ଯେ ଜଣେ ଶିକ୍ଷକ କିମ୍ବା ଅଧ୍ୟାପକ କେତେ ଶହ ଛାତ୍ରଙ୍କୁ ଶିକ୍ଷାପ୍ରଦାନ କରିଥାଆନ୍ତି । ତାଙ୍କର ଚିନ୍ତା ଓ ଭାବନା ମାତ୍ର କେତେ ଶହ ଶିକ୍ଷିତ ବ୍ୟକ୍ତିଙ୍କୁ ଅନୁପ୍ରାଣିତ କରିଥାଏ । ମାତ୍ର ଜଣେ ଦକ୍ଷ ସମ୍ପାଦକଙ୍କର ଲେଖନୀଚାଳନା କ୍ଷେତ୍ରରେ ଏହା ଏକ ଉଲ୍ଲେଖନୀୟ ବ୍ୟତିକ୍ରମ । କାରଣ ସେ ଯାହା ଲେଖନ୍ତି, ତାହା ହଜାର ହଜାର ଶିକ୍ଷିତ ଓ ଅଶିକ୍ଷିତ ଲୋକମାନଙ୍କ ମଧ୍ୟରେ କେବଳ ପ୍ରଚାରିତ ହୁଏ ନାହିଁ । ସେହି ସମ୍ବାଦ ବା ପ୍ରବନ୍ଧ ସେମାନଙ୍କ ପାଇଁ ହୁଏ ବେଦର ବାକ୍ୟ । ସମ୍ବାଦପତ୍ରରେ ପ୍ରକାଶିତ ଲେଖା ସାମାଜିକ ଜୀବନକୁ ଅତ୍ୟନ୍ତ ଭୟଙ୍କର ଭାବରେ ଆଲୋଡିତ କରିଥାଏ । ତେଣୁ ସମ୍ପାଦକର ଶିକ୍ଷା, ଅନୁଭୂତି ଓ ଦାୟିତ୍ୱବୋଧ ଜାଗ୍ରତ ନ ଥିଲେ ତାହା ଅପରିଣାମଦର୍ଶୀ ପରିଣତିର କାରଣ ହୁଏ ।

ସମ୍ବାଦପତ୍ର ଦୁଇପ୍ରକାର ସାହିତ୍ୟ ପ୍ରଚାର କରିଥାଆନ୍ତି—(କ) ସମ୍ବାଦ-ସାହିତ୍ୟ (ଖ) ଅଭିଜାତ ସାହିତ୍ୟ । ସମ୍ବାଦ ସାହିତ୍ୟର ଲକ୍ଷ୍ୟ ଜନସାଧାରଣଙ୍କର ଭାବ ଚେତନାକୁ ଜାଗ୍ରତ କରିବା, ଅଭିଜାତ ସାହିତ୍ୟ ଜାଗ୍ରତ କରିଥାଏ ବୌଦ୍ଧିକ ଚେତନା ।

ନୀଳମଣି ବିଦ୍ୟାରତ୍ନଙ୍କର ଲେଖନୀ ଏହି ଦୁଇ ଶ୍ରେଣୀର ଲେଖା ପ୍ରଚାର କରିବାରେ ଯତ୍ନବାନ ହୋଇଥିଲା । କାରଣ ତାଙ୍କର ପ୍ରଧାନ ଆଭିମୁଖ୍ୟ ଥିଲା ଜାତୀୟ ଜୀବନର ସର୍ବାଙ୍ଗୀନ ଜାଗରଣ । ସମ୍ପାଦକ ପ୍ରକୃତପକ୍ଷେ ସେକାଳରେ ଥିଲେ ସମାଜ ଜୀବନର ଜାଗ୍ରତ-ପ୍ରହରୀ । ଏହି ଆଭିମୁଖ୍ୟକୁ ଅଗ୍ରଭାଗରେ ରଖି ନୀଳମଣି ଅନେକ ମୂଲ୍ୟବାନ ପ୍ରବନ୍ଧ କ୍ଷୁଦ୍ର ପୁସ୍ତକ ଆକାରରେ ପ୍ରଚାର କରିଥିଲେ । ଏହି ପୁସ୍ତକଗୁଡ଼ିକର ପ୍ରବନ୍ଧଶୈଳୀ ଅତ୍ୟନ୍ତ ବଳିଷ୍ଠ, ଯୁକ୍ତିନିଷ୍ଠ ଏବଂ ଗବେଷଣା-ସମ୍ମତ । ଜାତିକୁ ଶୁଦ୍ଧ ଓ ସଂସ୍କାରପ୍ରାଣ କରିବାପାଇଁ ସେ କେତେ ଶାସ୍ତ୍ର ଅଧ୍ୟୟନ କରି ଯୁକ୍ତିସମ୍ମତ ପ୍ରାମାଣିକ ପ୍ରସଙ୍ଗ ଉତ୍ଥାପନ କରିଥିଲେ । ତାହା ଏହି କ୍ଷୁଦ୍ର ପୁସ୍ତକ ପାଠ କଲେ ପ୍ରମାଣିତ ହୋଇଥାଏ । ସମ୍ପାଦକ ନୀଳମଣି ବିଦ୍ୟାରତ୍ନ କିପରି ଲୋକଶିକ୍ଷକ ଥିଲେ, ତାହା ଏହି 'ସ୍ମରଣିକା'ରେ ସ୍ଥାନିତ ତାଙ୍କ ଲିଖିତ ଚାରି ଗୋଟି ଦୁଷ୍ପ୍ରାପ୍ୟ ଗ୍ରନ୍ଥର ପ୍ରମାଣିତ ହୋଇ ପାରିବ । ଆମର ହସ୍ତଗତ ହେଲେ ଭବିଷ୍ୟତରେ ଅନ୍ୟଗ୍ରନ୍ଥଗୁଡ଼ିକ ମଧ୍ୟ ଲୋକଲୋଚନକୁ ଆଣିବାପାଇଁ ଯତ୍ନ କରାଯିବ ।

ଏହି ସଂକଳନରେ ସ୍ଥାନିତ ଚାରି ଗୋଟି ଗ୍ରନ୍ଥ ହେଲା—(୧) ରାଜନୀତି (୨) ନାରୀପତ୍ର (୩) ସ୍ୱର୍ଗ-ନରକ ବିଚାର ଓ (୪) ଲଙ୍କାଦର୍ଶନ ( ଖଣ୍ଡ କାବ୍ୟ)

'ରାଜନୀତି' ପ୍ରକାଶିତ ହୋଇଥିଲା ୧୮୯୬ ଖ୍ରୀଷ୍ଟାବ୍ଦରେ ବାମଣ୍ଡା ରାଜ୍ୟରୁ ସୁଲଭ ପ୍ରେସରୁ । ଏହାର ପୃଷ୍ଠା ସଂଖ୍ୟା ୧୭ । ବାମଣ୍ଡା ରାଜ୍ୟର ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବଙ୍କ ରାଜକର୍ମରେ ଉପଯୁକ୍ତ ଶିକ୍ଷାପ୍ରଦାନ ଉଦ୍ଦେଶ୍ୟରେ ଏହି ଗ୍ରନ୍ଥ ରଚିତ ହୋଇଥିଲା । ମୁଖବନ୍ଧର ଅବତରଣିକାରେ ନୀଳମଣି ରାଜକୁମାରଙ୍କର ଜଣେ ମଙ୍ଗଳାକାଙ୍କ୍ଷୀ ହିସାବରେ ସୂଚାଇ ଦେଇଥିଲେ ଏହିପରି—

"ବାସ୍ତବରେ ରାଜାଙ୍କୀୟ ଜୀବନ ବଡ଼ ଦାୟିତ୍ୱପୂର୍ଣ୍ଣ । କବିବାଣୀ ଅଛି ଯେ "ରାଜା ରାଜ୍ୟାଶ୍ରମର ଭିତ୍ତି", ଏ ଉକ୍ତି ଅତୀବ ସତ୍ୟପୂର୍ଣ୍ଣ କିନ୍ତୁ ଏଥିର ସଫଳତା ସର୍ବାଂଶେ କଠୋର ସଂଯମ ଆବଶ୍ୟକ । ଉପଯୁକ୍ତ ସଂଯମ ଅଭାବରୁ କେତେ କେତେ ନରପତି ମଦନ ଓ ଆଳସ୍ୟର ଉପାସକ ହୋଇ ପ୍ରତ୍ୟବାୟଗ୍ରସ୍ତ ହୋଇପଡ଼ି-

ଅଛନ୍ତି ଓ ହେଉଅଛନ୍ତି । ସୁଖର ବିଷୟ ଶୀଘ୍ରମୁଁ ତରୁଣ ଯୌବନରେ ପଦାର୍ପଣ କରି ସୁଦ୍ଧା ସେମାନଙ୍କୁ ଆତ୍ମବଶରେ ରଖିଛନ୍ତି ।"

ଇଂରେଜ ରାଜତ୍ୱକାଳରେ ଆମର ଅଧିକାଂଶ ଦେଶୀୟ ରାଜ୍ୟର ରାଜା ଜମିଦାରଗଣ ବିଳାସବ୍ୟସନରେ ରତ ରହି ଅଣାତପୂର୍ଣ୍ଣ ଜୀବନଯାପନ କରୁଥିଲେ । ତେଣୁ ଦେଶୀୟ ରାଜ୍ୟରେ ଅତ୍ୟାଚାର ସହ୍ୟ କରି ନ ପାରି ଅନେକ ପ୍ରଜା ବ୍ରିଟିଶ ଶାସିତ ଅଞ୍ଚଳରେ ଆସି ଅବସ୍ଥାନ କରିବାପାଇଁ ଶ୍ରେୟ ମଣୁଥିଲେ । ନୀଳମଣି ଲେଖିଛନ୍ତି—"ରାଜାମାନେ କର୍ତ୍ତବ୍ୟଭ୍ରଷ୍ଟ ହୋଇ ଈଶ୍ୱରଙ୍କ ନିକଟରେ ପ୍ରତ୍ୟବାୟ ଗ୍ରସ୍ତ ହେଉଅଛନ୍ତି ଏବଂ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଲାଞ୍ଛିତ ହେଉଅଛନ୍ତି । କେହି କେହି କ୍ଷମତାଚ୍ୟୁତ ମଧ୍ୟ ହେଉଅଛନ୍ତି । ଦେଶୀୟ ରାଜାମାନଙ୍କର କର୍ତ୍ତବ୍ୟଜ୍ଞାନର ଅଭାବ, ବିଳାସ ପରାୟଣତା ଏବଂ ଅର୍ଥଗୃଧ୍ନୁତା ଅବନତିର ସରଳ ସୋପାନ । × × × ସେମାନେ ସୁଶିକ୍ଷିତ ଏବଂ କର୍ତ୍ତବ୍ୟନିଷ୍ଠ ହୋଇ ସୁଖ୍ୟାତି ଅର୍ଜନ କରନ୍ତୁ, ଏହା ଆମ୍ଭମାନଙ୍କର ଆନ୍ତରିକ ଇଚ୍ଛା ।"

ଏପରି ମନ୍ତବ୍ୟ ପାଠ କଲେ ବିଦ୍ୟାରତ୍ନଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଅବଧାରଣ କରିହୁଏ । ଦାମଣ୍ଡା ରାଜଦରବାର ଅଧୀନ ଜଣେ କର୍ମଚାରୀ ମଧ୍ୟ ରାଜାମାନଙ୍କର ଆଚରଣକୁ କଠୋର ଭାଷାରେ ସମାଲୋଚନା କରିବାପାଇଁ ସେ ସତ୍‌ସାହସୀ ହୋଇ ପାରିଥିଲେ । ମହାରାଷ୍ଟ୍ରକେଶରୀ ମହାବୀର ଶିବାଜୀଙ୍କୁ ଦାଦାଜୀକୋଣ୍ଡଦେବ ଉପଯୁକ୍ତ ରାଜନୀତିକ ହେବାପାଇଁ ଯେଉଁ ଉପଦେଶ ପ୍ରଦାନ କରିଥିଲେ ଏଠାରେ ପ୍ରସଙ୍ଗକ୍ରମେ ସମ୍ପାଦକ ନୀଳମଣି ତାହା ଉଲ୍ଲେଖ କରିବା ସହିତ ମାର୍କଣ୍ଡେୟ ପୁରାଣରେ ରାଣୀ ମଦାଲସା ରାଜପୁତ୍ର ଅଲର୍କଙ୍କୁ ଯେଉଁ ମୂଲ୍ୟବାନ ଉପଦେଶ ପ୍ରଦାନ କରିଥିଲେ ତାହାର ମଧ୍ୟ ଅବତାରଣା କରିଛନ୍ତି । ରାଜା କିପରି ବ୍ୟକ୍ତିଗତ ଜୀବନଯାପନ କରିବେ, ପ୍ରଜାମାନଙ୍କ ସ୍ୱାର୍ଥରକ୍ଷା ପାଇଁ କେଉଁ ନୀତି ଅବଲମ୍ବନ କରିବେ, ରାଜ୍ୟ ପରିଚାଳନା ପାଇଁ ରାଜକର୍ମଚାରୀମାନଙ୍କ କାର୍ଯ୍ୟପ୍ରତି କିପରି ତୀକ୍ଷ୍ଣ ଦୃଷ୍ଟି ରଖିବେ, ଏହି ସବୁ ବିଷୟରେ ଦାଦାଜୀକୋଣ୍ଡଦେବଙ୍କ ମନ୍ତବ୍ୟ ଅତ୍ୟନ୍ତ ଉପାଦେୟ । ଉଦାହରଣ ଛଳରେ କୁହାଯାଇଛି—"ଚାଟୁକାରମାନଙ୍କ କଥାରେ ଭୁଲିଯିବ ହେବନାହିଁ, ଧନବାନ୍‌ମାନଙ୍କର ଏମାନେ ପରମଶତ୍ରୁ । ଯଥାର୍ଥବାଦୀ ପଣ୍ଡିତମାନଙ୍କୁ ସମ୍ମାନ ଓ ଅର୍ଥଦେଇ ପୂଜା କରିବ, ଯେହେତୁ ସେମାନେ ଯଥାର୍ଥ ମିତ୍ର । × × × ଭୋଜନ ଓ ପରିଧାନ ବିଷୟରେ କେବେହେଁ ଆଡ଼ମ୍ବର କରିବ ନାହିଁ, ଏହା ମୂର୍ଖମାନଙ୍କୁ ଶୋଭାପାଏ । ଭାଙ୍ଗ, ଅଫିମ, ଗଞ୍ଜେଇ, ମଦ୍ୟ ପ୍ରଭୃତି ମାଦକଦ୍ରବ୍ୟ ଠାରୁ ଅତି ଦୂରରେ ଅବସ୍ଥାନ କରିବ । × × × ରାଜାହିଁ ପ୍ରଜାର ପିତା ଓ

ମାତା, ଅତଏବ ପିତାମାତାଙ୍କ ପରି ପ୍ରଜାର ସକଳପ୍ରକାର ଉନ୍ନତିର ଚେଷ୍ଟା କରିବ । × × × ଆପଣାର ସ୍ୱାର୍ଥ ସକାଶେ ଦେଶର ସ୍ୱାର୍ଥ ଉପରେ କୌଣସି ପ୍ରକାରେ ଆଘାତ ପ୍ରଦାନ କରିବ ନାହିଁ । × × × ସର୍ବଦା ଦେଶ କାଳ ଓ ପାତ୍ର ବିବେଚନା କରି କାର୍ଯ୍ୟ କରିବ ଏବଂ ଧର୍ମପଥରୁ କେବେହେଁ ବିଚ୍ୟୁତ ହେବ ନାହିଁ ।"

ମଦାଳସାଙ୍କର ଉପଦେଶ ଜଣେ ଆଦର୍ଶ ରାଜାଙ୍କୁ ଏହିପରି—"ଧାର୍ମିକ ରାଜାମାନଙ୍କ ପକ୍ଷରେ ପ୍ରଜାନୁରଞ୍ଜନହିଁ ପରମଧର୍ମ । ରାଜନୀତି ଓ ଧର୍ମନୀତି ଏ ଉଭୟଟି ପୃଥକବସ୍ତୁ । କିନ୍ତୁ ପ୍ରକୃତ ଧାର୍ମିକ ବ୍ୟକ୍ତିମାନେ ଏହି ପାର୍ଥକ୍ୟ ଦୂର କରିବା ସକାଶେ ସର୍ବଦା ଯତ୍ନବାନ । ଯେଉଁଠାରେ ସ୍ୱାର୍ଥ ସେଠାରେ ଧର୍ମର ଅଭାବ । ତୁମେ ସର୍ବଦା ନିଃସ୍ୱାର୍ଥ ହୋଇ କାର୍ଯ୍ୟ କରିବ, ତାହାହେଲେ ରାଜନୀତି ଓ ଧର୍ମନୀତିରେ ପାର୍ଥକ୍ୟ ରହିବ ନାହିଁ ।"

ଆଉ ଗୋଟିଏ ପୁସ୍ତକ ହେଲା 'ନାଶପତ୍ର' । ପୁରୀ ରାଧାକାନ୍ତ ମଠର ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀଙ୍କ ଆନୁକୂଲ୍ୟରେ କଟକ ପ୍ରିଣ୍ଟିଂ କମ୍ପାନୀ ମୁଦ୍ରିତ କରିଥିଲେ ୧୯୧୪ ମସିହାରେ । ଏହି ପୁସ୍ତକର ନାମକରଣ ବିଷୟରେ ନୀଳମଣି ପ୍ରବନ୍ଧର ଉପସଂହାରରେ ଲେଖିଥିଲେ—"ଧୂଆଁପତ୍ର ଦ୍ୱାରା ନସ୍ୟ ପ୍ରସ୍ତୁତ ହୁଏ ବୋଲି ତାହାର ଅପର ନାମ ନାଶପତ୍ର । ମାତ୍ର ଧୂଆଁପତ୍ର ଶରୀର ନାଶରେ ସକ୍ଷମ ଥିବା ହେତୁ ଦନ୍ତ୍ୟ 'ସ' ଠାରେ ତାଲବ୍ୟ 'ଶ' ହେବା ଅର୍ଥାତ ଧୂଆଁପତ୍ରର ଅନ୍ୟନାମ ନାଶପତ୍ର ହେବା ଉଚିତ ।" ଏହା ଏକ ଗବେଷଣାତ୍ମକ ନିବନ୍ଧ । ଲୋକ କଲ୍ୟାଣ ଉଦ୍ଦେଶ୍ୟରେ ସମ୍ପାଦକ ନୀଳମଣିଙ୍କର ଏହି ସାଧନା ଅତ୍ୟନ୍ତ ଉଲ୍ଲେଖନୀୟ । ଏହି ପ୍ରବନ୍ଧ ଲେଖିବା ଅବସରରେ ଲେଖକ 'ଭାବପ୍ରକାଶ' ନାମକ ବୈଦ୍ୟକ ଗ୍ରନ୍ଥ, ଡାକ୍ତର ଏଡ୍‌ଉଇନ, ପି. ଗ୍ଲିସନ, ଡାକ୍ତର କଙ୍କୋଏଷ୍ଟ, ଆର. ବି. ଗ୍ରିନ, ଗିବ୍‌ଲନ ଓ ଗ୍ରିନଉଡ଼୍, ଡାକ୍ତର ଦୁର୍ଗାଦାସ କରଙ୍କ ଲିଖିତ "ଭୈଷଜ୍ୟ ରତ୍ନାବଳୀ" ପ୍ରଭୃତିଙ୍କର ମତ ଉଦ୍ଧୃତ ପ୍ରଦାନ କରି ନିଜର ଯୁକ୍ତିକୁ ଦୃଢ଼ୀଭୂତ କରିଅଛନ୍ତି ।

ନିଶା ରାକ୍ଷସୀର କବଳରେ ଆଜି ସମଗ୍ର ସମାଜଜୀବନ ଗ୍ରାସିତ ଓ କଳୁଷିତ । ମାଦକଦ୍ରବ୍ୟ ସେବନ ଦ୍ୱାରା ବ୍ୟକ୍ତି ଓ ସମାଜର କି ମାରାତ୍ମକ କ୍ଷତି ସାଧିତ ହୁଏ, ସେହି ବିଷୟରେ ନୀଳମଣିଙ୍କର ଏହି ପୁସ୍ତକ ଏକ ପ୍ରଚଣ୍ଡ ଚେତାବନୀ । ପରିଶେଷରେ ପାଣ୍ଡିତ୍ୟପୂର୍ଣ୍ଣ ଦୀର୍ଘ ଆଲୋଚନା ଉପସ୍ଥାପିତ କରି ନୀଳମଣି ଲେଖିଥିଲେ—"ଉପରୋକ୍ତ ପ୍ରମାଣ ବଚନମାନଙ୍କ ଦ୍ୱାରା ସୁସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ ତମାଖୁ ଯେକୌଣସି ପ୍ରକାରେ ବ୍ୟବହାର କଲେ

ସ୍ନାୟୁଦୌର୍ବଲ୍ୟ, ଘ୍ରାଣ ଓ ସ୍ମୃତି ଶକ୍ତିର ହ୍ରାସ, ଆସ୍ୱାଦନର ବ୍ୟତିକ୍ରମ, ହୃତ୍ସ୍ପନ୍ଦନ, କାଶ, ଶ୍ୱାସ, କୁଷ୍ଠ, ଦୈହିକଜାଡ୍ୟପ୍ରଧାନ, ମୁଖ ଦୁର୍ଗନ୍ଧଯୁକ୍ତ, ଦନ୍ତ ଶ୍ଳଥମୂଳ ହୁଏ । ତଦ୍ଭିନ୍ନ ସକାଶେ ଅନେକ ସମୟ ଏବଂ ଅର୍ଥ ମଧ୍ୟ ନଷ୍ଟ ହୁଏ । ଶରୀର ବୃଦ୍ଧିରେ ବାଧା ଘଟେ । ଏବଂବିଧ ଅନେକ ଅନିଷ୍ଟ ଘଟୁଥିବାସ୍ଥଳେ ତମାଖୁସେବନରେ ପ୍ରବୃତ୍ତହେବା ସୁବିବେଚନାର କାର୍ଯ୍ୟ ନୁହେ ।"

ନୀଳମଣିଙ୍କ ଲିଖିତ ଅନ୍ୟ ଏକ ବହି ଯାହା ଏହି ସଂକଳନରେ ସ୍ଥାନିତ ହୋଇଛି, ତାହା ହେଲା—"ସ୍ୱର୍ଗ-ନରକ ବିଗ୍ଭର ।" ଦୁଃଖର ବିଷୟ, ପ୍ରାପ୍ତ ପୁସ୍ତକଟି ଅତ୍ୟନ୍ତ ଜୀର୍ଣ୍ଣଶୀର୍ଣ୍ଣ ଏବଂ ଏହାର ପ୍ରଥମ ପୃଷ୍ଠାଟି ନଷ୍ଟ ହୋଇଯାଇ-ଥିବାରୁ ପ୍ରକାଶକାଳ ଏବଂ ମୁଦ୍ରଣ ଅନୁଷ୍ଠାନ ବିଷୟରେ ଜାଣିବାର ସୁଯୋଗ ନାହିଁ । ତେବେ ଏହି ବହିଟିରେ ଅନ୍ଧାନୁସରଣ ଓ କୁସଂସ୍କାର ବିରୋଧରେ ବିଦ୍ୟାରନ୍ତ ଲେଖନୀ ସ୍ପୃଳନା କରିଛନ୍ତି । ପୁରାଣମାନଙ୍କରେ ସ୍ୱର୍ଗ ଓ ନର୍କ ବିଷୟରେ ଅନେକ ଉଦ୍‌ଭ୍ରାନ୍ତ ବର୍ଣ୍ଣନା ଦେଖିବାକୁ ମିଳେ । ସେଥିପାଇଁ ଏହି ଦୁଇଟି ପୁର ବିଷୟରେ ପୁରାଣପାଠକମାନଙ୍କର ଅନେକ ଭ୍ରାନ୍ତଧାରଣା ରହିବା ସ୍ୱାଭାବିକ । ଏହି ସ୍ୱର୍ଗଲାଭ କରିବା ଉଦ୍ଦେଶ୍ୟରେ "ଲୋକମାନେ ନାନାବିଧ ବ୍ରତୋପବାସ କରିଥାନ୍ତି, କେହି କେହି କଠୋର-ଅତିକଠୋର ତପସ୍ୟା କରି ଈଶ୍ୱରଦତ୍ତ ଶରୀର ପ୍ରତି ଅତ୍ୟାଚାର କରିଥାନ୍ତି । କେତେକ ଲୋକ ସ୍ୱର୍ଗବାସୀ ହେବା ବାସନାରେ ନରଢଣସ୍ଥ ନିଷ୍ଠୁରତା ଅବଲମ୍ବନ କରି ପଶୁମେଧ ଏମନ୍ତ କି ନରମେଧ ପର୍ଯ୍ୟନ୍ତ କରୁଥିବା ପୁରାଣ ପ୍ରସିଦ୍ଧ ।"

ମାତ୍ର ଏହା ଏକ ଭ୍ରାନ୍ତ ଧାରଣା ବୋଲି ନୀଳମଣି ପ୍ରତିପାଦନ କରିଛନ୍ତି । ତତ୍କାଳୀନ ସ୍ୱନାମଧନ୍ୟ ନାଟ୍ୟକାର ଓ ଔପନ୍ୟାସିକ ରାମଶଙ୍କର ରାୟଙ୍କ 'ମୁକୁର' ମାସିକ ସାହିତ୍ୟ ପତ୍ରରେ ପ୍ରକାଶିତ "ସତ୍ୟଧର୍ମ" (୬ଷ୍ଠ ଭାଗ ଦ୍ୱିତୀୟ ସଂଖ୍ୟା) ପ୍ରବନ୍ଧର ବହୁ ଅଂଶ ଆଲୋଚନା ଛଳରେ ଉଦ୍ଧାର କରିଥିବା ଜଣାଯାଏ ।

ଏହି ପ୍ରବନ୍ଧରେ ଲେଖକ ମହାଭାରତ, ଭାଗବତ ଏବଂ ସଂସ୍କୃତ ସାହିତ୍ୟର ବହୁ ଶାସ୍ତ୍ରପୁରାଣର ଉଦାହରଣ ପ୍ରଦାନ କରି ପ୍ରତିପାଦନ କରିଅଛନ୍ତି ଏହିପରି—

"ଯଥା କାରୀ ଯଥା ଚାରୀ ତଥା ଭବତି । ସାଧୁକାରୀ ସାଧୁ ଭବତି । ପାପକାରୀ ପାପୋଭବତି । ପୁଣ୍ୟଂ ପୁଣ୍ୟେନ କର୍ମ୍ମଣା ଭବତି ପାପଂ ପାପେନ ।

ଯେଉଁ ମନୁଷ୍ୟ ଯେପରି କର୍ମ କରେ ବା ଯେପରି ଆଚରଣ କରେ, ତାହାର ସେହିପରି ଗତି ହୁଏ । ଯେ ସାଧୁକର୍ମ କରନ୍ତି, ସେ ସାଧୁ ହୁଅନ୍ତି

ଅର୍ଥାତ୍ କ୍ରମଶଃ ସାଧୁମାନଙ୍କ ଆଡ଼କୁ ସେ ଗତି କରନ୍ତି । ଆଉ ଯେ ପାପ କର୍ମ କରେ, ସେ ପାପୀ ହୁଏ ଅର୍ଥାତ୍ ତାହାର ଦେବଭାବ ସବୁ ମ୍ଳାନଭାବ ଧାରଣ କରେ, ତାହାର ପଶୁବୃତ୍ତି ସମସ୍ତ ଉତ୍ତେଜିତ ହୋଇ କ୍ରମରେ ତାହାକୁ ଅଧିକତର ପାପରେ ନିମଗ୍ନ କରେ । × × × ସତ୍ତ୍ୱ ଗୁଣର ଉଦୟ ହେବାହିଁ ସ୍ୱର୍ଗ ଏବଂ ତମୋଗୁଣ ପ୍ରବଳ ହେବାର ନାମ ନରକ ।''

ମୋଟ ଉପରେ ଏହା ଏକ ସଂସ୍କାରଧର୍ମୀ ପୁସ୍ତିକା । ପାଶ୍ଚାତ୍ୟ ଶିକ୍ଷାର ପ୍ରସ୍ତୁର ଯୋଗୁଁ ଦେଶରେ ନବଜାଗରଣର ଭାବନା ଅଙ୍କୁରିତ ହେଉଥିଲା । ପରମ୍ପରାରେ ପ୍ରଚଳିତ ଅନେକ ଭ୍ରମଧାରଣା ଓ କୁସଂସ୍କାର ବିରୋଧରେ ଲୋକଶିକ୍ଷକ ଆଦର୍ଶ ସମ୍ପାଦକ ଓ ସାମ୍ବାଦିକ ଲେଖମାଳାନା କରି ଓଡ଼ିଶାରେ ଏକ ନବଯୁଗର ଅନ୍ୟତମ କର୍ଣ୍ଣଧାର ଭାବରେ ପ୍ରତିଭାତ ହୋଇଥିଲେ ନୀଳମଣି ବିଦ୍ୟାରତ୍ନ ।

ଜଣେ ବଳିଷ୍ଠ ପତ୍ରକାର ଏବଂ ପ୍ରବନ୍ଧକ ଭାବରେ ନୀଳମଣି ବିଦ୍ୟାରତ୍ନଙ୍କର ଭୂମିକା ଅତ୍ୟନ୍ତ ଅବିସ୍ମରଣୀୟ ।

ଶ୍ରୀ ପଠାଣି ପଟ୍ଟନାୟକ

———

# ପୁନଶ୍ଚ ଦୁର୍ଭିକ୍ଷ !

ବିଂଶ ଶତାବ୍ଦୀ ଶେଷ । ୨୦୦୦ ମସିହା ଶେଷ ହେବା ମୂହୁର୍ତ୍ତରେ ପୁଣି ଦୁର୍ଭିକ୍ଷର ପଦଧ୍ୱନୀ । କଳାହାଣ୍ଡିରୁ ଦେବଗଡ଼ ପର୍ଯ୍ୟନ୍ତ ସମଗ୍ର ପଶ୍ଚିମ ଓଡିଶାରେ ଚଳିତ ବର୍ଷ ଉତ୍କଟ ମରୁଡି । ଦେବଗଡଠାରୁ ଖଡିଆଳ, ବରପାଲୀ ଠାରୁ ସୋନପୁର ଯାଏ ଯେଉଁ ପଶ୍ଚିମ ଓଡିଶା ଓଡିଆ ଭାଷାର ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ଆନ୍ଦୋଳନର ସୂତ୍ରପାତ କରିଥିଲା, ଓଡିଆ ଭାଷାଭାଷୀ ଲୋକଙ୍କ ପାଇଁ ଏକ ରାଜ୍ୟ ଗଠନର ପରିକଳ୍ପନା କରିଥିଲା ଏବଂ ଓଡିଆ ଜାତିର ଅର୍ଥନୈତିକ ଓ ସାମାଜିକ ବିକାଶ ସାଧନ ପାଇଁ ଓ ଓଡିଆ ଜାତିର ଆତ୍ମ ନିୟନ୍ତ୍ରଣ ଅଧିକାର ପାଇଁ ବିଂଶ ଶତାବ୍ଦୀର ଆରମ୍ଭରେ ଜୟଯାତ୍ରା ଆରମ୍ଭ କରିଥିଲା; ଠିକ୍ ଏକ ଶହ ବର୍ଷ ପରେ ସେହି ଅଂଚଳରେ ଆଜି ଦୁର୍ଭିକ୍ଷର କରାଳ ଛାୟା ।

ନଅଙ୍କ ଦୁର୍ଭିକ୍ଷର ବର୍ଷ ୧୮୬୬ । ଠିକ ୧୩୪ ବର୍ଷ ପରେ ଓଡ଼ିଶାର ବ୍ୟାପକ ଗ୍ରାମାଞ୍ଚଳରେ ଦୁର୍ଭିକ୍ଷର ତାଣ୍ଡବଲୀଳା । ନଅଙ୍କ ଦୁର୍ଭିକ୍ଷର ଗର୍ଭଚିରି ଜନ୍ମ ନେଇଥିଲେ ନୀଳମଣି ବିଦ୍ୟାରତ୍ନ ୧୮୬୭ରେ । ନଅଙ୍କ ଦୁର୍ଭିକ୍ଷଠାରୁ ଆହୁରି ମାରାତ୍ମକ ଥିଲା ବ୍ରିଟିଶ ଉପନିବେଶବାଦୀମାନଙ୍କ ଦ୍ୱାରା ସୃଷ୍ଟ ରାଜା, ଜମିଦାର, ସାମନ୍ତ ଶ୍ରେଣୀ ଓ ବ୍ରିଟିଶ ଜମିଦାରୀ ବ୍ୟବସ୍ଥା । ସେମାନଙ୍କର ଶାସକ, ଶୋଷଣ ଓ ଲୁଣ୍ଠନ ନଅଙ୍କ ଦୁର୍ଭିକ୍ଷରେ ଦୁର୍ଦ୍ଦଶାକୁ ବହୁଗୁଣ ବଢାଇ ଦେଇଥିଲା । ଯାହାର ଉତ୍କଟ ତାଡନାରେ ଗ୍ରାମର ଯୁଗଯୁଗର ଚାଷୀ, ଗ୍ରାମ୍ୟ କାରୀଗର ଦାଆ ବାଡି ଧରି; ଭୀଟାମାଟି ଛାଡି ଜୀବନ ବଂଚାଇବା ପାଇଁ ଦୂର ଦୂରାନ୍ତ ପଳାନ୍ତର ହେଲେ । ଗିରିମିଟିଆ କୁଲି ହୋଇ ଆସାମ ଚା' ବଗିଚା, ରେଙ୍ଗୁନ, ସିଂହଳ, ଦରିଆପାରି ରାଜ୍ୟକୁ ଅଣଲେଉଟା ହୋଇ ଚାଲାଣ ହୋଇଗଲେ । ସାମ୍ରାଜ୍ୟବାଦୀ କଂପାନୀମାନେ ଜନମାନବ ହୀନ ଦ୍ୱୀପ ଗୁଡିକରେ ଚା, କଫି, ରବର, ଆଖୁ ଚାଷ କରାଇ ପ୍ରଚୁର ମୁନାଫା ମାରିଲେ ।

ଠିକ ନଅଙ୍କ ଦୁର୍ଭିକ୍ଷର ଅଭିଶପ୍ତ ଜୀବନ ପରି ଉତ୍କଟ ଦାରିଦ୍ର୍ୟ, ଚରମ ଦୁର୍ଦ୍ଦଶା ଭିତରେ ଯୁଗ ଯୁଗ ଧରି ଷଢୁଥିବା କଳାହାଣ୍ଡି, ନୂଆପଡା, ବଲାଙ୍ଗୀର, ସୋନପୁର, ବରଗଡ, ଝାରସୁଗୁଡା, ସମ୍ବଲପୁର ଓ ଦେବଗଡର ଅସୁମାରୀ ଗରୀବ ଚାଷୀ, କ୍ଷେତ ମଜୁରିଆ, ଭୂମିହୀନ କୁଲି, ଗ୍ରାମ୍ୟ କାରିଗର ଆଦି ବ୍ୟାପକ ଖଟିଖିଆ ଜନସାଧାରଣ ଆଜି ଦୁର୍ଭିକ୍ଷ ଆତଙ୍କରେ ଆତଙ୍କିତ ।

ଅପର ପକ୍ଷରେ ଏହି ବ୍ୟାପକ ଅଂଚଳରେ ଧନୀ ଓ ସ୍ୱଚ୍ଛଳ ଚାଷୀଙ୍କ ମାଲିକାନାରେ ଥିବା ୮% ଜଳସେଚିତ ଜମିରେ ଚଳିତ ଖରିଫ ଋତୁରେ ପ୍ରଚୁର ଧାନ ଉତ୍ପାଦନ ହୋଇଛି । ଏହି ଫସଲ ଉତ୍ପାଦନ ମଧ୍ୟ ଏହି ଗରୀବ ଚାଷୀ, କ୍ଷେତ ମଜୁରିଆଙ୍କ ହାତରେ ହୋଇଛି ।

ଏପରିକି ଚଳିତ ବର୍ଷ ସ୍ଥାନାଭାବ ଯୋଗୁ ନୂଆଧାନ କିଣିବା ପାଇଁ ମିଲମାଲିକମାନେ ଅକ୍ଷମତା ପ୍ରକାଶ କରୁଛନ୍ତି । କାରଣ, ବର୍ଷ ବର୍ଷ ଧରି ଏହି ଅଂଚଳରେ ଥିବା ମିଲ ମାଲିକଙ୍କ ଗୋଦାମରେ ଖାଦ୍ୟ ନିଗମର ଚାଉଳ, ଗହମ ଭର୍ତ୍ତି ହୋଇ ରହିଛି । ଫଳରେ ଧାନ ଦର ହ୍ରାସ ପାଉଛି । ଏସବୁ କମ ହଟଚମଟ ନୁହେଁ ।

ଆହୁରି, ଖୋଦ ଭାରତ ସରକାରଙ୍କ ଖାଦ୍ୟ ନିଗମ ଗୋଦାମରେ ଲକ୍ଷ ଲକ୍ଷ ଟନ ଚାଉଳ, ଗହମ ମହଜୁଦ ଥିଲା ବେଳେ ଅନାହାର, ଅନାହର ମୃତ୍ୟୁ ସମ୍ବାଦ ପ୍ରତିଦିନ ପ୍ରକାଶ ପାଉଛି । ଠିକ୍ ମହାଭାରତ ବର୍ଣ୍ଣିତ କୁବେର ଘରେ ପ୍ରଚୁର ଖାଦ୍ୟ ପଦାର୍ଥ ଥିଲା ବେଳେ ଯେପରି ଦୁର୍ଭିକ୍ଷରେ ସାଧାରଣ ଲୋକେ ମରୁଥିଲେ । ନଅଙ୍କ ଦୁର୍ଭିକ୍ଷ ୧୮୬୬ ସମୟରେ ବ୍ରିଟିଶ ସାମ୍ରାଜ୍ଞୀଙ୍କ ଖାଦ୍ୟ ଭଣ୍ଡାରରେ ପ୍ରଚୁର ଖାଦ୍ୟଶସ୍ୟ ଥିଲାବେଳେ ଓଡ଼ିଶାର ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ମାଲମାଲ ହୋଇ ମଲେ । ୧୯୪୩ ବଙ୍ଗ ଦୁର୍ଭିକ୍ଷରେ ବ୍ରିଟିଶ ସରକାରଙ୍କ ଖାଦ୍ୟ ଭଣ୍ଡାରରେ ପ୍ରଚୁର ଚାଉଳ, ଗହମ ମହଜୁଦ ଥିଲାବେଳେ ଯେପରି ବଙ୍ଗଳାର ଗ୍ରାମାଞ୍ଚଳରୁ ଲକ୍ଷ ଲକ୍ଷ ଲୋକ ଶେଷ ହୋଇଗଲେ । ସରକାରୀଭାବେ କୁହାଗଲା । 'ଦେଶରକ୍ଷାର ପ୍ରାଥମିକତା ଦୃଷ୍ଟିରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋଗୁ ଖାଦ୍ୟଶସ୍ୟ ପରିବହନ ବାହାରୁ ବଙ୍ଗଦେଶକୁ ହୋଇ ନପାରିବାରୁ ବହୁ ଜନଜୀବନ କ୍ଷୟ ହେଲା । ଦୁର୍ବଳ ସଡକ ପରିବହନ ବ୍ୟବସ୍ଥା, ରେଳ ପଥ ଓ ସମୁଦ୍ରପଥର ଅପର୍ଯ୍ୟାପ୍ତତା କାରଣରୁ ବାହାରୁ ଖାଦ୍ୟଶସ୍ୟ ବଙ୍ଗ ପ୍ରଦେଶକୁ ପରିବହନ ହେବା ସମ୍ଭବ ହେଲା ନାହିଁ । ଧନ୍ୟ ଦେଶରକ୍ଷାର ପ୍ରାଥମିକତା !

ମାତ୍ର ବର୍ତ୍ତମାନ ସଡକ ପରିବହନ ବ୍ୟବସ୍ଥା ଅତି ଉନ୍ନତ । ରେଳ ପରିବହନ କ୍ଷମତା ୧୦୦ ଗୁଣ ଅଧିକ । ସାମୁଦ୍ରିକ ପରିବହନ କ୍ଷମତା ୨୫୦ ଗୁଣ । ବାହାର ରାଜ୍ୟରୁ ଖାଦ୍ୟଶସ୍ୟ ପରିବହନ କରି ଆଣିବାର କୌଣସି ଆବଶ୍ୟକତା ନଥିଲା । ଖାଦ୍ୟପାଇଁ ଯୁଧିଷ୍ଠିର ଭୀମକୁ କୁବେର ପାଖକୁ ପଠାଇବାର କାରଣ ନଥିଲା । କିମ୍ବା ବ୍ରିଟିଶ ରାଣୀଙ୍କ ପାଖରେ ଖାଦ୍ୟପାଇଁ ହାତ ପତେଇବାର ନଥିଲା ।

ଏପରି ଏକ ଖାଦ୍ୟ ଭଣ୍ଡାରରେ ଆଜି ଦୁର୍ଭିକ୍ଷ ପଡ଼ିଲା ! ଲକ୍ଷ ଲକ୍ଷ ଟନ ଚାଉଳ, ଗହମ ଏହି ବ୍ୟାପକ ଅଂଚଳରେ ମହଜୁଦ ଥିବା ବେଳେ ଲୋକେ ଅନାହାରରେ ଜଳବଳ

ହୋଇ ଅନାହାର ମୃତ୍ୟୁର ଶୀକାର ହେଉଥିବା ସମ୍ବାଦ ପ୍ରତିଦିନ ପ୍ରକାଶ ପାଉଛି । ଗତ ଅଗଷ୍ଟରୁ ଡିସେମ୍ବର ମଧ୍ୟରେ ପଶ୍ଚିମ ଓଡିଶାର ଏହି ବ୍ୟାପକ ଅଂଚଳରୁ ପ୍ରାୟ ୪୦% ଲୋକ ଗାଁ ଗଣ୍ଡା, ଭୀଟାମାଟି ଛାଡି 'ଖଟି ଖାଇ ଜୀବନ ବଂଚାଇବା ପାଇଁ' ଅନ୍ୟ ରାଜ୍ୟକୁ ଦାଦନ ଖଟିବା ପାଇଁ ଚାଲାଣ ହୋଇଯାଉଛନ୍ତି । ପିଲାମାନେ ଶିକ୍ଷା ଲାଭରୁ ବଂଚିତ ହେଉଛନ୍ତି । ଘରବାଡି, ଭୀଟାମାଟି ସବୁ ଉଜୁଡି ଯାଉଛି ।

ଏହି ପଳାନ୍ତର ଦାଦନ କୂଲି ପରିବାରମାନଙ୍କ ଦୁର୍ଦ୍ଦଶାର ସୀମା ନାହିଁ । ଆନ୍ଧ୍ର ପ୍ରଦେଶର ଇଟାଭାଟି ଗୁଡିକରେ କିମ୍ବା ମଧ୍ୟପ୍ରଦେଶ, ମହାରାଷ୍ଟ୍ରର ଆଧୁନିକ ଧନୀ ଓ ରାଜନେତାମାନଙ୍କ ଫାର୍ମହାଉସ ଓ ନିର୍ମାଣ କାର୍ଯ୍ୟରେ ଅତି ଶୋଚନୀୟ ଅବସ୍ଥାରେ ଅଳ୍ପ ମଜୁରୀରେ କାମ କରିବାକୁ ସେମାନେ ବାଧ୍ୟ ହୁଅନ୍ତି । ଇଟାଭାଟିର ସେଠ, ଫାର୍ମ ହାଉସର ମାଲିକ କିମ୍ବା ନିର୍ମାଣକାର୍ଯ୍ୟର ଠିକାଦାରମାନେ ଏହି ଦାଦନ କୂଲିମାନଙ୍କ ଉପରେ ମଧ୍ୟଯୁଗୀୟ କ୍ରିତଦାସତ୍ୱ ଆରୋପ କରନ୍ତି । ଜୀବନ ବଂଚାଇବାକୁ ଯାଇ ଅନେକ ଜୀବନ ୬ ମାସ ମଧ୍ୟରେ ହରାନ୍ତି ଏବଂ ଅନେକ ଇଟାଭାଟିରେ ଅତିରିକ୍ତ ଖଟଣି ଖଟି ରୋଗଗ୍ରସ୍ତ ହୋଇ ଫେରି ଆଉ ବର୍ଷେ ଛଅ ମାସ ଗାଁରେ ସଢି ସଢି ମୃତ୍ୟୁ ମୁଖରେ ଯାଆନ୍ତି । ଓଡିଆ ଦାଦନ କୂଲି ପାଇଁ କାହିଁ ଗଣତାନ୍ତ୍ରିକ ଅଧିକାର, ଆଇନର ଶାସନ ? କାହିଁ ସାମ୍ବିଧାନିକ ସୁରକ୍ଷାର ପ୍ରତିଶୃତି ପାଳନ ? ଦାରିଦ୍ର୍ୟ ଓ ଦୁର୍ଭିକ୍ଷର କଷାଘାତରେ ଜର୍ଜରିତ ନୀଳମଣି ବିଦ୍ୟାରତ୍ନଙ୍କ ଜନଦରଦୀ ଆତ୍ମା ଓଡିଆମାନଙ୍କର ଏପରି ଦୁର୍ଦ୍ଦଶା ଦେଖି ସମ୍ଭାଳି ପାରିଥାଆନ୍ତା ତ !



# ଜଦଧାରନ୍ତଙ୍କ ଦୃଷ୍ଟିରେ

## ଭାରତୀୟ ତଥ୍ୟ

( ଉତ୍କଳ ମଧୁପ, ଜୁଲାଇ ୧୮୧୮ )

କଲିକତାର ସାମାଜିକ ହିତସାଧନ ମଣ୍ଡଳୀ ଅନେକଗୁଡ଼ିଏ ଭାରତୀୟ ତଥ୍ୟ ଚିତ୍ର-ସାହାଯ୍ୟରେ ସାଧାରଣଙ୍କୁ ଜଣାଇ ଦେଇଅଛନ୍ତି । ସେହି ସବୁ ବିବରଣୀ ସଞ୍ଜୀବନୀ ପତ୍ରିକାରେ ପ୍ରକାଶିତ ହୋଇଅଛି । ତହିଁ ମଧ୍ୟରୁ କେତେକ ବିଷୟ ସଙ୍କଳନ କରି ନିମ୍ନରେ ପ୍ରକାଶ କରାଯାଉଅଛି ।

ଭାରତବର୍ଷରେ ପ୍ରତି ଏକଶତଜଣ ଅଧିବାସୀଙ୍କ ମଧ୍ୟରେ ୫ ଜଣଙ୍କର ମାତ୍ର ଅକ୍ଷର ପରିଚୟ ଅଛି କିନ୍ତୁ ଅମେରିକାରେ ଶତକରା ୯୯.୧, ଇଂଲଣ୍ଡରେ ୯୯ ଏବଂ ଜାପାନରେ ୯୫ ଜଣ ସାକ୍ଷର ହୋଇଅଛି ।

ଜାପାନରେ ୧୦୦ ଜଣ ବାଳକ ମଧ୍ୟରେ ୯୮.୫ ଜଣ ଏବଂ ୧୦୦ ଜଣ ବାଳିକା ମଧ୍ୟରେ ୯୮ ଜଣ ପଢ଼ିପାରନ୍ତି । ଭାରତରେ ଶତକରା ୨୩ ଜଣ ବାଳକ ଏବଂ ୩ ଜଣ ବାଳିକା ପଢ଼ିବାକୁ ଶିଖି ଅଛନ୍ତି ।

ଭାରତରେ ମୋଟ ୧୫ କୋଟି ୨୯ ଲକ୍ଷ ୯୬ ହଜାର ୯୧୯ ଜଣ ନାରୀ ବାସ କରନ୍ତି, ସେମାନଙ୍କ ମଧ୍ୟରେ ୨ କୋଟି ୬୪ ଲକ୍ଷ ୨୧ ହଜାର ୨୬୨ ଗଣ ବିଧବା । ଅର୍ଥାତ୍ ୬ ଜଣ ସ୍ତ୍ରୀଲୋକ ମଧ୍ୟରେ ଜଣେ ବା ଶତକରା ୧୭.୩ ଜଣ ବିଧବା ।

ଭାରତରେ ୧୫ ବର୍ଷର ନ୍ୟୁନ ବୟସରେ ୯୦ ଲକ୍ଷ ୭୭ ହଜାର ୭୭୭ ଜଣ, ୧୦ ବର୍ଷର ନ୍ୟୁନରେ ୨୫ ଲକ୍ଷ ୨୨ ହଜାର ୨୦୩ ଜଣ, ୫ ବର୍ଷର ନ୍ୟୁନବୟସରେ ୩ ଲକ୍ଷ ୨ ହଜାର ୪୦୫ ଜଣ ବିବାହ ହୋଇଅଛନ୍ତି ଏବଂ ୫ ବର୍ଷର ନ୍ୟୁନରେ ୧୭ ହଜାର ୭୦୩, ୧୦ ବର୍ଷର ନ୍ୟୁନରେ ୧ ଲକ୍ଷ ୧୧ ହଜାର ଜଣ, ୧୫ ବର୍ଷ ନ୍ୟୁନରେ ୩ ଲକ୍ଷ ୩୫ ହଜାର ୧୫ ଜଣ ବିଧବା ହୋଇ ଅଛନ୍ତି ।

୧୯୧୧ ସାଲର ଲୋକଗଣନା ହିସାବ ଅନୁସାରେ କଲିକତା ସହରରେ ୧୨ ହଜାର ୮୪୮ ଜଣ ପତିତା ନାରୀ ବାସ କରୁଥିଲେ । ୧୯୧୮ ସାଲରେ ସେହି ସଂଖ୍ୟା ବୃଦ୍ଧି ଲଭି ୧୬ ହଜାର ହୋଇଅଛି ।

ଭାରତରେ ସର୍ବମୋଟ ୧.୫ ଲକ୍ଷ ଶିଳ୍ପୀ, ୭ ଲକ୍ଷ ୪୬ହଜାର ବଣିକ, ୧୯କୋଟି ୧୬ ଲକ୍ଷ ୯୧ହଜାର ୭୩ ଜଣ କୃଷକ, ୪୨ଲକ୍ଷ ୨୨ହଜାର ୨୪୧ ଜଣ ଭିକ୍ଷୁକ, ୧୮ ଲକ୍ଷ ୩୪ହଜାର ୯୫୮ ଜଣ କ୍ଷୁଦ୍ର ଦୋକାନଦାର ଏବଂ ୨୭ଲକ୍ଷ ୨୮ହଜାର ୮୧୨ ଜଣ ପୁରୋହିତ ବୃତ୍ତି ଅବଲମ୍ବନରେ ଜୀବିକା ନିର୍ବାହ କରୁଅଛନ୍ତି ।

ପ୍ରତି ଏକହଜାର ମଧ୍ୟରୁ ଇଂଲଣ୍ଡରୁ ୧୨୮, ସ୍କଟ୍‌ଲଣ୍ଡରୁ ୧୧୬, ଫ୍ରାନ୍‌ସରୁ ୧୩୨ ଜର୍ମାନୀରୁ ୧୮୬, ଅଷ୍ଟ୍ରିଆରୁ ୨୦୬ ରୁଷିଆ ୨୬୦, ଜାପାନରୁ ୧୬୦, ବଙ୍ଗଦେଶରୁ ୨୭୦, ମାନ୍ଦ୍ରାଜ ପ୍ରଦେଶରୁ ୧୯୯, ବୋମ୍ବାଇ ପ୍ରଦେଶରୁ ୩୨୦, ପଞ୍ଜାବରୁ ୩୦୬, ଯୁକ୍ତ ପ୍ରଦେଶରୁ ୩୫୨, ବିହାର-ଓଡ଼ିଶାରୁ ୩୦୪ ଏବଂ ବ୍ରହ୍ମଦେଶରୁ ୩୩୨, ଲଣ୍ଡନରୁ ୧୦୦, କଲିକତାରୁ ୩୧୦ ଜଣ ଶିଶୁ ପ୍ରତିବର୍ଷ କାଳଗ୍ରାସରେ ପତିତ ହୋଇଥାନ୍ତି । ଭାରତବର୍ଷର ସର୍ବମୋଟ ମୃତ୍ୟୁର ହାର ଫ୍ରାନ୍‌ସର ୨ଗୁଣ, ଡେନ୍‌ମାର୍କର ୩ଗୁଣ, ସୁଇଡେନର ୨ଗୁଣ ଏବଂ ଇଂଲଣ୍ଡର ୨ଗୁଣ ।

ଭାରତରେ ଅନ୍ୟାନ୍ୟ ଦେଶ ଅପେକ୍ଷା ମୃତ୍ୟୁ ସଂଖ୍ୟା ଅଧିକ, ଅଥଚ ଦେଶର ଏକ ତୃତୀୟାଂଶ ସ୍ଥାନରେ ପୀଡ଼ିତ ବ୍ୟକ୍ତିମାନେ ଚିକିତ୍ସକଙ୍କ ସାହାଯ୍ୟ ପାଆନ୍ତି ନାହିଁ । ଭାରତରୁ ପ୍ରତିବର୍ଷ ହାରାହାରି ଜ୍ୱର ରୋଗରେ ୪କୋଟି ୨୪ଲକ୍ଷ ୬୩ ହଜାର, ପ୍ଲେଗରେ ୬ଲକ୍ଷ ୩୩ହଜାର, ବସନ୍ତିକାରେ ୩ଲକ୍ଷ ୫୪ହଜାର ଏବଂ ବସନ୍ତ ରୋଗରେ ୫୮ହଜାର ୫୦୦ଜଣ ଲୋକ ମରିଥାଆନ୍ତି ।

ଚୀନ୍ ଦେଶରେ ୪୦କୋଟି, ଭାରତରେ ୩୧୳କୋଟି, ରୁଷିଆରେ ୧୭୳କୋଟି, ଜାପାନରେ ୬କୋଟି ୭୦ଲକ୍ଷ, ମାର୍କିନ ଯୁକ୍ତ ରାଜ୍ୟରେ ୧୦କୋଟି ଗ୍ରେଟ୍ ବ୍ରିଟେନ୍‌ରେ ୪୳କୋଟି ଏବଂ ଫ୍ରାନ୍‌ସରେ ୪କୋଟି ଲୋକ ବାସ କରନ୍ତି, ସୁତରାଂ ଜନସଂଖ୍ୟାରେ ଭାରତବର୍ଷ ପୃଥିବୀରେ ଦ୍ୱିତୀୟ ସ୍ଥାନୀୟ ।

ଭାରତବର୍ଷର ପରିମାଣ ଫଳ ୧୮ଲକ୍ଷ ୨ହଜାର ୬୨୯ବର୍ଗମାଇଲ । ଏଥିର ଏକ ତୃତୀୟାଂଶ ଜମି କର୍ଷଣ ଯୋଗ୍ୟ । ଏହି ଦେଶରେ ୪୨ ସହସ୍ର ମାଇଲ ଖଣି ଅଛି । ଜାପାନର ପରିମାଣ ଫଳ ୧ଲକ୍ଷ ୪୮ହଜାର ୬୫୬ ବର୍ଗମାଇଲ । ତହିଁ ମଧ୍ୟରେ କର୍ଷଣ ଯୋଗ୍ୟ ଜମି ଏକ ଷଷ୍ଠାଂଶ ମାତ୍ର ।

ଭାରତବର୍ଷକୁ ପ୍ରତ୍ୟେକ ବର୍ଷ ହାରାହାରି ୧୧କୋଟି ୯୩ଲକ୍ଷ ୩୧ହଜାର ୪୮୦ଟଙ୍କାର ଚିନି ବିଦେଶରୁ ଆସେ ଏବଂ ୧୪ଲକ୍ଷ ୬୫ହଜାର ୫୭୫ଟଙ୍କାର ଚିନି ବିଦେଶକୁ ପ୍ରେରିତ ହୁଏ ।

ଡିଗ୍‌ବି ସାହେବ ୧୯୦୦ଖ୍ରୀଃରେ ନାନା ଦେଶର ପ୍ରତ୍ୟେକ ଲୋକର ହାରାହାରି ବାର୍ଷିକ ଆୟ ପରିମାଣ ନିମ୍ନଲିଖିତ ପ୍ରକାର ଥିବାର ପ୍ରକାଶ କରିଅଛନ୍ତି । ଯଥା : ଭାରତବର୍ଷ ୧, ରୁଷିଆ ୧୧, ଇଟାଲି ୧୨, ଅଷ୍ଟ୍ରିଆ ୧୫, ସ୍ପେନ ୧୬, ସୁଇଜରଲଣ୍ଡ ୧୯, ନରୱେ ୨୦, ହଲଣ୍ଡ ୨୨, ଜର୍ମାନୀ ୨୨, କାନାଡ଼ା ୨୬, ଫ୍ରାନ୍‌ସ ୨୬, ମାର୍କିନ-ଯୁକ୍ତରାଜ୍ୟ ୩୯, ଅଷ୍ଟ୍ରେଲିଆ ୪୦, ସ୍କଟଲଣ୍ଡ ୪୫ ପାଉଣ୍ଡ । ପ୍ରତି ପାଉଣ୍ଡର ମୂଲ୍ୟ ୧୫ଟଙ୍କା । ଉଲ୍ଲିଖିତ ହିସାବ ଅନୁସାରେ ପୃଥିବୀରେ ଭାରତ ହିଁ ଦରିଦ୍ରତମ ଦେଶ ।

---

# କାର୍ପାସ ସମ୍ବନ୍ଧେ ବିଶ୍ବାସ

(ଉତ୍କଳ ମଧୁପ : ୫ମ ସଂଖ୍ୟା ୮ମ ଭାଗ, ଜୁଲାଇ, ୧୯୧୮)

ପୃଥିବୀ ମଧ୍ୟରେ କେବଳ ଭାରତ ବର୍ଷରେ ସର୍ବ ପ୍ରଥମ କପାଚାଷ ହୋଇଥିଲା । ଇଂରେଜମାନେ କହନ୍ତି, ଖ୍ରୀଷ୍ଟ ଜନ୍ମ ହେବାର ପାଞ୍ଚଶତ ବର୍ଷ ପୂର୍ବେ ଭାରତବର୍ଷରେ କପାଚାଷ ହେଉଥିଲା । ଭାରତରୁ କ୍ରମରେ ତାହା ଏସିଆ ମହାଦେଶରେ ବ୍ୟାପ୍ତ ହେଲା । ଇଉରୋପର ଲୋକମାନେ ବିଶ୍ୱାସ କରୁଥିଲେ ଯେ କପା ଗଛର ଫଳ ମଧ୍ୟରେ ଏକ ପ୍ରକାର ଜନ୍ତୁ ଅବସ୍ଥିତ କରେ । ତୁଳା ସେମାନଙ୍କ ଶରୀରର ଲୋମ, ସୁତରାଂ ସେମାନେ ତାହାକୁ "କଟନଉଲ" ଅର୍ଥାତ୍ "ତୁଳା ନାମକ ଜନ୍ତୁର ଶରୀରର ପଶମ', କହନ୍ତି । ଏବେ ମଧ୍ୟ ଇଂଲଣ୍ଡରେ ତୁଳା ଉକ୍ତ ନାମରେ ପରିଚିତ ।

# ଶିଶୁ ପ୍ରସଙ୍ଗ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ ଉତ୍କଳମଧୁପ, ସେପ୍ଟେମ୍ବର, ୧୯୧୫ ଷଷ୍ଠଭାଗ, ଦ୍ୱିତୀୟ ସଂଖ୍ୟାରୁ)

ଭୂମିଷ୍ଠ କାଳରେ ସାଧାରଣତଃ ଶିଶୁ ତିନି ସେର ଠାରୁ ସାଢ଼େ ତିନି ସେର ଭାରଥାଏ । ପରେ ତିନି ଚାରିଦିନ ମଧ୍ୟରେ ପ୍ରାୟ ଅର୍ଦ୍ଧ ସେର ଓଜନ କମିଯାଏ । ପୁନଶ୍ଚ ସାତଦିନ ମଧ୍ୟରେ ସେହି ଅର୍ଦ୍ଧ ସେର ବୃଦ୍ଧିପାଏ, ଅର୍ଥାତ୍ ୧୦ ଦିନ ମଧ୍ୟରେ ଶିଶୁର ଓଜନ ଭୂମିଷ୍ଠ ହେବା ସମୟର ଓଜନ ସହିତ ସମାନ ହୋଇଥାଏ । ଏହି ସମୟଠାରୁ ଶିଶୁର ଓଜନକ୍ରମରେ ବୃଦ୍ଧିଲାଭ କରିବା ଆରମ୍ଭ ହୁଏ । ଏକବର୍ଷ ବୟସରେ ଶିଶୁର ଓଜନ ଭୂମିଷ୍ଠ ହେବା କାଳର ଓଜନର ତିନିଗୁଣ ହୋଇଥାଏ । ଦ୍ୱିତୀୟ ବର୍ଷରେ ୩ ସେର, ତୃତୀୟ ବର୍ଷରେ ୨ ସେର ୧ପା ବୃଦ୍ଧିପାଏ । ଚତୁର୍ଥଠାରୁ ଅଷ୍ଟମ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷରେ ୨ ସେର ଲେଖାଏ ଓଜନ ବୃଦ୍ଧି ହୋଇଥାଏ । ନବମ, ଦଶମ ଓ ଏକାଦଶ ବର୍ଷରେ ୩ ସେର ଲେଖାଏ ବୃଦ୍ଧି ପ୍ରାପ୍ତ ହୁଏ ।

ଭୂମିଷ୍ଠ ହେବା କାଳରେ ଶିଶୁର ଶରୀରର ଦୀର୍ଘତା ୧୯ ଠାରୁ ୨୦ ଇଞ୍ଚ ହୋଇଥାଏ । ଶିଶୁ ପ୍ରଥମବର୍ଷରେ ଲମ୍ବରେ ୮ ଇଞ୍ଚ, ଦ୍ୱିତୀୟ ବର୍ଷରେ ଦେଢ଼ଇଞ୍ଚ ଏବଂ ତତ୍ପରେ ୧୧ ବର୍ଷ ପର୍ଯ୍ୟନ୍ତ ୨ ଠାରୁ ୩ ଇଞ୍ଚ ଲେଖାଏ ବଢ଼ିଥାଏ ।

ଶରୀରର ଓଜନ ଓ ଦୀର୍ଘତା ଶିଶୁର ସୁସ୍ଥ ଅବସ୍ଥାରେ କ୍ରମଶ ବର୍ଦ୍ଧିତ ହୋଇଥାଏ । ପୁଷ୍ଟିର ଅଭାବ ବା ରୋଗ ହେତୁ ଏଥିର ବୈଲକ୍ଷଣ ଘଟିଥାଏ ।

ଭୂମିଷ୍ଠ ହେବା ସମୟରେ ଶିଶୁର ମସ୍ତକର ବେଢ଼ ୧୩ ଠାରୁ ୧୪ ଇଞ୍ଚ ହୋଇଥାଏ । ପ୍ରଥମବର୍ଷର ଏହି ବେଢ଼ ପ୍ରାୟ ୪ ଇଞ୍ଚ ବଢ଼ିଥାଏ, ଦ୍ୱିତୀୟ ବର୍ଷରେ ୧ ଇଞ୍ଚ ଏବଂ ୫ ବର୍ଷ ବୟସରେ ଆଉରି ଦେଢ଼ଇଞ୍ଚ ବଢ଼ିଥାଏ ।

ଚତୁର୍ଥ ମାସରେ ଶିଶୁ ଅଙ୍ଗଚାଳନା କରିବାକୁ ସକ୍ଷମ ହୁଏ, ସାତ ମାସପରେ ବସିପାରେ ୯ ମାସ ବୟସରେ ଠିଆ ହୋଇପାରେ । ଏକବର୍ଷ ବୟସହେଲେ ଚାଲିବାର ଚେଷ୍ଟା କରେ । ୧୫ ମାସ ଠାରୁ ୧୮ ମାସ ମଧ୍ୟରେ ନିଜେ ନିଜେ ଚାଲିବାକୁ ସକ୍ଷମ ହୁଏ ।

ନବଜାତ ଶିଶୁର ଚକ୍ଷୁ କଣିକା ସହ୍ୟ ହୁଏ ନାହିଁ । ଚକ୍ଷୁର କଣିକା ଆଲୋକରେ ସଙ୍କୁଚିତ ହୋଇଯାଏ ଏବଂ ଚକ୍ଷୁର ପତା ବନ୍ଦ ହୋଇଯାଏ । ତିନି ମାସପରେ ଚକ୍ଷୁର ବାହାରର ମାଂସପେଶୀମାନ କାର୍ଯ୍ୟକ୍ଷମ ହୋଇଥାଏ । ଚକ୍ଷୁର ସମ୍ମୁଖର କାଚପରି ସ୍ୱଚ୍ଛ ଆବରଣର ସ୍ପର୍ଶଶକ୍ତି ଅତି ସାମାନ୍ୟ ମାତ୍ରାରେ ଥିବାହେତୁ ଶିଶୁର ଚକ୍ଷୁ ଅତି ସାବଧାନତାର ସହିତ ଧୌତ କରିବା ଆବଶ୍ୟକ । ପ୍ରଥମ ସପ୍ତାହରେ ଚକ୍ଷୁ ନିକଟକୁ କୌଣସି ଦ୍ରବ୍ୟନେଲେ ଚକ୍ଷୁପତା ବନ୍ଦ ହୁଏ ନାହିଁ । ଶିଶୁ ୬ ମାସ ପର୍ଯ୍ୟନ୍ତ କୌଣସି ଦ୍ରବ୍ୟ ସ୍ପଷ୍ଟରୂପେ ଦେଖିପାରେ ନାହିଁ । ୨/୩ ମାସ ପର୍ଯ୍ୟନ୍ତ କାନ୍ଦିବା ବେଳେ ଚକ୍ଷୁରୁ ଲୋତକ ନିର୍ଗତ ହୁଏ ନାହିଁ ।

ସ୍ପର୍ଶଶକ୍ତି, ଭୂମିଷ୍ଠ ହେବା କାଳରେ ନଥାଏ, କିନ୍ତୁ ଏହି ଶକ୍ତି ଓଷ୍ଠ ଓ ଜିହ୍ୱାରେ ତୀକ୍ଷ୍ଣ ଭାବରେ ଥାଏ । ତୃତୀୟ ମାସରେ ଉକ୍ତ ଶକ୍ତି ସାଧାରଣ ଭାବରେ ସର୍ବ ଶରୀରରେ ବ୍ୟାପ୍ତ ହୁଏ, କିନ୍ତୁ ମୁଖ ଗହ୍ୱର ସାମାନ୍ୟ ତାପର ତାରତମ୍ୟ ବିଶେଷ ଅନୁଭବ କରେ, ସେଥିପାଇଁ ଶିଶୁମାନଙ୍କୁ ଆହାର୍ଯ୍ୟ ଦେବା କାଳରେ ଖାଦ୍ୟଦ୍ରବ୍ୟାଦିର ଉତ୍ତାପ ଲକ୍ଷ୍ୟ ରଖିବା ଆବଶ୍ୟକ ।

ପ୍ରଥମବର୍ଷପରେ ଶିଶୁର ବାକ୍ ଶକ୍ତିର ବିକାଶ ଆରମ୍ଭ ହୁଏ । ବାଳିକାମାନଙ୍କର ବାଳକମାନଙ୍କ ଅପେକ୍ଷା ଶୀଘ୍ର ବାକ୍ୟ ବିକାଶ କରିଥାଏ । ୬ ମାସ ସମୟରେ ଶିଶୁମାନଙ୍କର ଦାନ୍ତ ଉଠିବା ଆରମ୍ଭ ହୁଏ ଏବଂ ଦୁଇବର୍ଷ ମଧ୍ୟରେ (୨୦ ଗୋଟି) ଦୁଧଦାନ୍ତ ବାହାରିଥାଏ । କୌଣସି କୌଣସି ସୁସ୍ଥ ଶରୀର ଶିଶୁର ଦଶ ମାସ ବୟସରେ ଦାନ୍ତ ବାହାରିବା ଆରମ୍ଭ ହୁଏ । ଉପଦଂଶ ବିଷଯୁକ୍ତ ଶିଶୁ ଦନ୍ତସହିତ ଭୂମିଷ୍ଠ ହୋଇଥାଏ ।

ଶୟନକାଳରେ ଶିଶୁ ଯେପରି ମୁଖ ବ୍ୟାଦାନ (ମେଲି) କରି ନିଦ୍ରା ନଯାଏ, ଏ ବିଷୟରେ ଦୃଷ୍ଟି ରଖିବା ଆବଶ୍ୟକ । ଏହା ଅତି କୁ-ଅଭ୍ୟାସ ଓ ସ୍ୱାସ୍ଥ୍ୟକ୍ଷୟକର । ମୁଖ୍ୟବ୍ୟାଦାନ ପୂର୍ବକ ଶୟନ କଲେ ନିଶ୍ୱାସ ଓ ପ୍ରଶ୍ୱାସର କାର୍ଯ୍ୟ, ପ୍ରକୃତିଦତ୍ତ ଯନ୍ତ୍ର ନାସାରନ୍ଧ୍ର ଦ୍ୱାରା ନ ହୋଇ ମୁଖ ଗହ୍ୱରଦ୍ୱାରା ସାଧିତ ହୁଏ ବୋଲି ଶରୀରର ଅପକାର ଘଟେ । ସର୍ବଦା ଶିଶୁକୁ ଶଯ୍ୟାରେ ଶୁଆଇ ରଖିବା ଭଲ ନୁହେଁ । ବୋତଲରେ ଦୁଧ ରଖି ରବର ନଳ ଲଗାଇ ଶିଶୁମାନଙ୍କୁ ତଦ୍ୱାରା ଦୁଧ ପିଆଇବା ହେତୁ ନାନାପ୍ରକାର ଦୋଷ ଓ ବ୍ୟାଧି ଉତ୍ପନ୍ନ ହୋଇଥାଏ । ଅତଏବ ଉକ୍ତ ରୀତି ପରିତ୍ୟାଗ କରିବ ।

---

# ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ କଲମରୁ

## "ଉତ୍କଳ ମଧୁପ" ସମ୍ବନ୍ଧେ ମନ୍ତବ୍ୟ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳ ମଧୁପ" ନଭେମ୍ବର ୧୯୧୫ଖ୍ରୀ: ୭ମ ଭାଗ ୪ର୍ଥ ସଂଖ୍ୟାରୁ )

"ଏଥିରେ ଗୃହସ୍ଥମାନଙ୍କର ଉପଯୋଗୀ ବିବିଧ ଜ୍ଞାତବ୍ୟ ବିଷୟମାନ ପ୍ରକାଶିତ ହେଉଅଛି । ଏହା ଉତ୍କଳର ଗୃହେ ଗୃହେ ପ୍ରଚ୍ଚରିତ ହେଉ ।"

—ତା ୨୫ । ୯ । ୧୯୧୫—"ଉତ୍କଳବାର୍ତ୍ତା"

"ଏଥିରେ ଜୀବନପଥର ସହାୟକ କୃଷି, ଶିଳ୍ପ, ବିଜ୍ଞାନ ଓ ନୀତିବିଷୟକ ସାରସଂଗ୍ରହ କରାଯାଉ ଥିବାରୁ ପତ୍ରିକା ଖଣ୍ଡିକ ବଡ଼ ଉପାଦେୟ ଓ ସୁପାଠ୍ୟ ହୋଇଅଛି ।"

—ତା ୨ । ୧୦ । ୧୯୧୫ "ସମ୍ବଲପୁର ହିତୈଷିଣୀ"

"ଗତ ସଂଖ୍ୟା ମଧୁପ ପଢ଼ି ଅତ୍ୟନ୍ତ ଆନନ୍ଦିତ ହେଲି । ମୁଁ ଆଶା-ବିଶ୍ୱାସକରେ ଏହା ପତ୍ରିକା ସମ୍ପାଦକୀୟ ସଭାରେ ଆପଣଙ୍କ ପ୍ରାଚୀନ ଆଦମ ଦୃଢ଼ଆସନକୁ ଦୃଢ଼ତର କରାଇବାକୁ ସକ୍ଷମ ହେବ ।"

—ତା ୧୦ । ୧୧ । ୧୯୧୫—ଶ୍ରୀଫକୀରମୋହନ ସେନାପତି

"ଆପଣ ଫେରେ ଉତ୍କଳମଧୁପ ପ୍ରକାଶକରି ଉତ୍କଳର ମହୋପକାର ସାଧନ କରୁଅଛନ୍ତି । ଆପଣଙ୍କ ଉତ୍ସାହ ଓ ଅଧ୍ୟବସାୟକୁ ଅଶେଷ ଧନ୍ୟବାଦ । ମୁଁ ଏଇ ସଂଖ୍ୟାପାଇ ଅତ୍ୟନ୍ତ ଆପ୍ୟାୟିତ ।"

—ତା ୨ । ୧୧ । ୧୯୧୫—ଶ୍ରୀ ଶ୍ରୀବତ୍ସ ପଣ୍ଡା (ବି.ଏ.)

"ଉତ୍କଳ ମଧୁପର ନୂତନପର୍ଯ୍ୟାୟ ମୁଁ ଉତ୍ତମରୂପେ ଦେଖିଅଛୁ, ଏହି ପତ୍ରିକା ଅଲ୍ପଜ୍ଞମାନଙ୍କର ବହୁଦର୍ଶିତା ବୃଦ୍ଧି ବିଷୟରେ ସାହାଯ୍ୟ କରି ପାରିବ ଏବଂ ବାଳକ ବାଳିକାମାନଙ୍କ ହସ୍ତରେ ନିର୍ଭୟରେ ଦିଆଯାଇ ପାରିବ । ଆଶାକରେ ଯେଉଁମାନେ ମୋହର ମତପ୍ରତି ଆସ୍ଥା ସ୍ଥାପନ କରନ୍ତି ସେମାନେ ଏହା ଶ୍ରଦ୍ଧାପୂର୍ବକ ଗ୍ରହଣ କରି ପ୍ରଚାର ବିଷୟରେ ଚେଷ୍ଟା କରିବେ ।"

—ତା ୯ । ୮ । ୧୯୧୫—ଶ୍ରୀ ଭଗବାନ ପଟ୍ଟନାୟକ,
ପୋଷ୍ଟାଲ ଇନ୍‌ସ୍‌ପେକ୍ଟର-ଗଞ୍ଜାମ

"ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ମାସିକ ପତ୍ରିକା "ମଧୁପ ପତ୍ରିକା ଯଥାର୍ଥରେ 'ମଧୁପ' ଯେପରି ବିବିଧପୁଷ୍ପରୁ ମଧୁ ସଞ୍ଚୟକରେ "ମଧୁପ"ରେ ମଧ୍ୟ ସେହିପରି ସାଂସାରିକ ସକଳ ବିଷୟ ସନ୍ନିବେଶିତ ହୋଇଅଛି । ଏହିପରି ଜ୍ଞାନଗର୍ଭିକ ପତ୍ରିକା ପାଠକଲେ ସାଂସାରିକ ବିଷୟ ଜ୍ଞାତ ହେବାରେ, ମନୁଷ୍ୟର କଞ୍ଚିତ ହେଲେ ତ୍ରୁଟି ରହିବ ନାହିଁ । ଅତଏବ ମୋ ମତରେ ଏହି ପତ୍ରିକା ଉତ୍କଳର ଆବାଳବୃଦ୍ଧବନିତାଙ୍କ ପାଠୋପଯୋଗୀ ଅଟେ ।"

—ଶ୍ରୀ ଅପର୍ତ୍ତି ପଣ୍ଡା,
ସହକାରୀ ଶିକ୍ଷକ-ପାରଳାକଲେଜ

## ବିବିଧ ସଂଗ୍ରହ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ ଉତ୍କଳ ମଧୁପ, ଜାନୁଆରି-୧୯୧୬, ୬ଷ୍ଠ ଭାଗ, ୬ଷ୍ଠ ସଂଖ୍ୟାରୁ)

୪ ଶତ ବର୍ଷପୂର୍ବେ ୭ ଗୋଟି ଧାତୁ ମାନବମାନଙ୍କ ମଧ୍ୟରେ ପରିଚିତ ଥିଲା । ବର୍ତ୍ତମାନ ୫୧ ପ୍ରକାର ଧାତୁ ବ୍ୟବହୃତ ହେଉଅଛି ।

ଜାପାନର ବାଳକ ବାଳିକାମାନଙ୍କ ଶରୀରରେ ସେମାନଙ୍କର ଗୃହ ଠିକଣା ଲେଖାଥାଏ । ସେମାନେ ବାଟ ବଣା ହେଲେ ଯେ କେହି ସେମାନଙ୍କୁ ସେମାନଙ୍କ ଗୃହରେ ଛାଡ଼ି ଦେଇପାରେ ।

ଖ୍ରୀଷ୍ଟଜନ୍ମର ୧୭୦ ବର୍ଷପୂର୍ବେ ଚୀନ ଦେଶରେ କାଗଜର ଆବିଷ୍କାର ହୋଇଥିଲା ।

ଫରାସୀ ଦେଶରେ ମତ୍ସ୍ୟର କ୍ଷୁଦ୍ର ଓ ଉଜ୍ଜ୍ୱଳ ଜାଲଦ୍ୱାରା ବୋତାମ ନଲଗା ମୁକ୍ତା ଏବଂ ନାନାପ୍ରକାର ଅଙ୍ଗାଭରଣ ପ୍ରସ୍ତୁତ ହୁଏ ।

---

## ତମାଖୁର ଆଦ୍ୟ ବୃତ୍ତାନ୍ତ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ ଉତ୍କଳମଧୁପ :ଜୁନ, ଜୁଲାଇ-୧୯୧୬, ୬ଷ୍ଠଭାଗ, ୧୧ଶ ସଂଖ୍ୟା)

୧୪୯୨ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ଭୁବନବିଖ୍ୟାତ କଲମ୍ବସ୍ ଆମେରିକାର ବିଭ୍ୟାଦ୍ୱୀପ ଆବିଷ୍କାର କରିଥିଲେ । ସେହି ସମୟରେ ସେଠାର ଅଶିକ୍ଷିତ ବ୍ୟକ୍ତିମାନେ ଧୂମପାନ କରୁଥିବାର ସେ ଦେଖିଥିଲେ । ବିଦ୍ୟା ଦ୍ୱୀପରୁ ପ୍ରଥମେ ସ୍ପେନଦେଶକୁ ତମାଖୁ ଆନୀତ ହେଲା । ୧୫୧୬ ଖ୍ରୀ:ଅରେ ସ୍ପେନରୁ ଫରାସୀ ଦେଶକୁ ତମାଖୁର ଗଛ ରପ୍ତାନି ହେଲା । ଅମେରିକାରୁ ଇଂଲଣ୍ଡକୁ ୧୫୬୫ ଖ୍ରୀ:ରେ ତମାଖୁ ଆସି ପ୍ରଚଳିତ ହେଲା । ୧୬୧୫ ଖ୍ରୀ:ରେ ଜନୈକ ଇଂରେଜ ରାଜଦୂତ ଭାରତର ବାଦଶାହା ଜାହାଙ୍ଗୀରଙ୍କ ସମୀପକୁ ଆସିଥିଲେ । ସେ ଆପଣା ସଙ୍ଗରେ ଭାରତକୁ ତମାଖୁ ଓ ଗୋଲଆଳୁ ସବ ପ୍ରଥମ ଆନୟନ କରିଥିଲେ । ସେହି ସମୟଠାରୁ ଭାରତରେ ତମାଖୁ ଏବଂ ଗୋଲଆଳୁ ପ୍ରଚଳିତ ହୋଇଆସୁଅଛି । ଏହିପରି ନାନାସୂତ୍ରରେ ତମାଖୁ ଆଜି ସମଗ୍ର ପୃଥିବୀରେ ଆଧିପତ୍ୟ ସ୍ଥାପନ କରିଅଛି ।

ସେ ଲୋକମାନଙ୍କୁ ଏପରି ବଶବର୍ତ୍ତୀ କରି ରଖିଅଛି ଯେ, ଲୋକ ତାହାର ଗୁରୁତର ଅପକାରିତା ବିଷୟ ଅନୁଭବ ଏବଂ ଶ୍ରବଣ କରି ସୁଦ୍ଧା ତହିଁର ବ୍ୟବହାରରୁ କ୍ଷାନ୍ତ ହୋଇ ପାରୁ ନାହାନ୍ତି ।"

———

## ଗଞ୍ଜାମ-ଗୁଣଦର୍ପଣ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ ଉତ୍କଳ ମଧୁପ, ଜୁଲାଇ ୧୯୧୮ ଖ୍ରୀ:' ୮ମ ଭାଗ, ୫ମ ସଂଖ୍ୟାର )

"ଗଞ୍ଜାମ ଗୁଣଦର୍ପଣ" ସାପ୍ତାହିକ ସମ୍ବାଦପତ୍ର "ବାହିକା ବା ଗଡ଼ବାସିନୀ" ଆକାରରେ ଅଗଷ୍ଟମାସ ଠାରୁ ନୂତନ ଅକ୍ଷରରେ ପୁନଶ୍ଚ ପ୍ରକାଶିତ ହେବା ଆରମ୍ଭ ହୋଇଅଛି । ପତ୍ରିକାର ଅଗ୍ରିମ ମୂଲ୍ୟ ସର୍ବସାଧାରଣଙ୍କ ନିମନ୍ତେ ଛ' ସିକିକା, ସ୍କୁଲ ଛାତ୍ରମାନଙ୍କ ନିମନ୍ତେ ପାଞ୍ଚ ସିକିକା ମାତ୍ର ଅଗ୍ରିମ ମୂଲ୍ୟ ବ୍ୟତିରେକେ ଅପରିଚିତ ବ୍ୟକ୍ତିମାନଙ୍କ ନାମରେ ପଠାଯାଏ ନାହିଁ । ଦୁଇ ପଇସାର ଡାକଟିକଟ୍ ପଠାଇଲେ

ନମୂନା ପଠାଯାଏ । ଏହି ପତ୍ରିକାରେ ଓଡ଼ିଆ ସମ୍ବାଦପତ୍ର ସମୂହରେ ପ୍ରକାଶିତ ଉତ୍କଳର ସମସ୍ତ ଜ୍ଞାତବ୍ୟ ସମ୍ବାଦ, ସମ୍ବାଦଦାତାମାନଙ୍କ ପ୍ରେରିତ ସମ୍ବାଦ ଏବଂ ଅନ୍ୟାନ୍ୟ ପ୍ରାଦେଶିକ ପତ୍ରିକାମାନଙ୍କରେ ପ୍ରକାଶିତ ନାନା ଦେଶୀୟ ଘଟନାବଳୀ ସଂକ୍ଷେପରେ ପ୍ରକାଶ କରାଯାଏ । ଏହା ଭିନ୍ନ ଦେଶର ଅଭାବ-ଅସୁବିଧା, ଅତ୍ୟାଚାର, ଅବିଚାର ବିବରଣ ସହିତ ବିବିଧ ସଦନୁଷ୍ଠାନର ବୃତ୍ତାନ୍ତ ମଧ୍ୟ ସନ୍ନିବେଶିତ କରାଯାଇ ଥାଏ । ସୁତରାଂ ଏକମାତ୍ର ଦର୍ପଣ ପାଠକଲେ ଦେଶବିଦେଶର ସମସ୍ତ ପ୍ରଧାନ ଘଟନା ସହଜରେ ଜଣା ପଡ଼ିବ, ଅଥଚ ପତ୍ରିକାର ମୂଲ୍ୟ ଏତେଅଳ୍ପ ଯେ ତାହା କାଗଜ ଓ ଡାକମାସୁଲ ଖରଚକୁ ନଅଣ୍ଟ, ସୁତରାଂ ଏକ ପ୍ରକାର ବିତରଣ କହିଲେ ଚଳେ । ପତ୍ରିକା ସମ୍ପର୍କୀୟ ପତ୍ରାଦି, ମେନେଜର, ବରୁଆଁ (ହିଙ୍ଗୁପଡ଼ା) ଠିକଣାରେ ପଠାଇବାକୁ ହେବ ।

## ବିବିଧ ସଂଗ୍ରହ

ଗୁଣର ସମାଦର : ଇଂଲଣ୍ଡର ବର୍ତ୍ତମାନ ପ୍ରଧାନସେନାପତି ଲର୍ଡ଼ ଜର୍ଜ୍‌ଙ୍କ ପିତା ଜଣେ କୃଷକ ଏବଂ ମାତୁଳ ଜଣେ ମୋଚି । ପାଶ୍ଚାତ୍ୟ ଦେଶରେ ଜାତି ବା ବ୍ୟବସାୟ ଦୃଷ୍ଟିରେ ସମ୍ମାନର ଇତର ବିଶେଷ କରା ନ ଯାଇ କେବଳ ଗୁଣର ସମାଦର କରାଯାଇଥାଏ ।

ଆୟୁଷ୍ମନ୍ତ : ଯେଉଁମାନେ ଚର୍ମ ପରିଷ୍କାର କରନ୍ତି, ଯେଉଁମାନେ ନର୍ଦ୍ଦମା ପରିଷ୍କାର କରନ୍ତି, ସେମାନେ ଦୀର୍ଘଜୀବୀ ହୁଅନ୍ତି, କିନ୍ତୁ କ୍ଷୌରକାରମାନେ ହାରାହାରି ୩୦।୪୦ ବର୍ଷରୁ ବେଶୀ ବଞ୍ଚନ୍ତି ନାହିଁ । ଦେଶର ଶାସନକର୍ତ୍ତୃପକ୍ଷଗଣ, କୃଷକ, ଶିକ୍ଷକ, ଦୋକାନଦାର୍ ସାଧାରଣତଃ ଏମାନେ ଦୀର୍ଘଜୀବୀ ହୋଇଥାନ୍ତି, କିନ୍ତୁ ଯେଉଁମାନେ କାରଖାନାମାନଙ୍କରେ କାର୍ଯ୍ୟ କରିଥାନ୍ତି, ସେମାନେ ଅଳ୍ପାୟୁ ହୋଇଥାନ୍ତି ।

### କାରଖାନାର ଶ୍ରମଜୀବୀ :

ସମଗ୍ର ଭାରତବର୍ଷରେ ୭୧୧୩ ଗୋଟି ଶିଳ୍ପ ସମ୍ବନ୍ଧୀୟ କାରଖାନା ଅଛି । ସେହି ସବୁ କାରଖାନାରେ ୨୦ ଲକ୍ଷ (ଅର୍ଥାତ୍, ୩୧ କୋଟି ଅଧିବାସୀ ମଧ୍ୟରୁ ହଜାରକରା ୭ ଜଣ ମାତ୍ର) ଭାରତବାସୀ କାର୍ଯ୍ୟ କରୁଅଛନ୍ତି । କାରଖାନା ମଧ୍ୟରେ ଲୁଗାବୁଣା କାରଖାନା ଅଧିକ । ସେହି ସବୁ କାରଖାନାରେ ୫ ଲକ୍ଷ ୫୮ ହଜାର, ଏବଂ ଖଣି ଖୋଳା କାର୍ଯ୍ୟରେ ୨ ଲକ୍ଷ ୨୪ ହଜାର ଲୋକ କାର୍ଯ୍ୟ କରୁଅଛନ୍ତି । ଦେଶର ଆକାର ଏବଂ ଜନସଂଖ୍ୟା ତୁଳନାରେ ଏହି କାରଖାନା ସଂଖ୍ୟା ଅତି ସାମାନ୍ୟ ।

———

# ସ୍ଥୂଳତ୍ୱ ନିବାରଣର ଉପାୟ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ "ଉତ୍କଳ ମଧୁପ" ଜୁଲାଇ, ୧୯୧୮, ୮ମ ଭାଗ, ୫ମ ସଂଖ୍ୟାରୁ )

ସ୍ଥୂଳକାୟ ବ୍ୟକ୍ତିମାନଙ୍କର ଜୀବନ କେବଳ ଦୁଃଖମୟ । ଆହାର, ଉପବେଶ, ବିଶ୍ରାମ, ଶୟନ, ଶୌଚ, ଗମନାଗମନ, କଥୋପକଥନ ପ୍ରଭୃତି କୌଣସି ପ୍ରକାର କାର୍ଯ୍ୟ ସ୍ଥୂଳକାୟ ମନୁଷ୍ୟ ପକ୍ଷରେ ସୁବିଧାଜନକ ନୁହେଁ । ସୁତରାଂ, ସେମାନେ ସକଳ ବିଷୟରେ ଚିର ଅଶାନ୍ତି ଉପଭୋଗ କରିଥାନ୍ତି । ବହୁଦର୍ଶୀ ଚିକିତ୍ସକମାନଙ୍କ ମତରେ ଅତ୍ୟନ୍ତ ଅମ୍ଳ ଉପଯୁକ୍ତ କମଳା ବା କାଗଜି ଯାହାକୁ ଅନେକେ ଜମ୍ବୀର ବୋଲି କହନ୍ତି, ତାହା ନିୟମିତ ରୂପେ ବ୍ୟବହାର କଲେ ସ୍ଥୂଳତା ନିବାରିତ ହୁଏ । ପ୍ରତ୍ୟେକ ଭୋଜନ ସମୟରେ ଅନ୍ତତଃ ଦୁଇଗୋଟି ଫଳର ରସ ଖାଇବାକୁ ହେବ । କିନ୍ତୁ ତାହା ମିଷ୍ଟ ରସବିଶିଷ୍ଟ ହୋଇଥିଲେ କୌଣସି ଫଳୋଦୟ ହେବ ନାହିଁ । ସ୍ଥୂଳକାୟ ବ୍ୟକ୍ତିମାନଙ୍କ ପକ୍ଷରେ ସାଧାରଣ ଜଳ ବ୍ୟବହାର କର୍ତ୍ତବ୍ୟ ନୁହେଁ । ଖନିଜ ଜଳ ସେମାନଙ୍କ ପକ୍ଷେ ଉପକାରୀ । ଡାକ୍ତର ଓଏରମିକେଲ କହିଅଛନ୍ତି, ବିଶୁଦ୍ଧ ଦୁଗ୍ଧର ଲହୁଣୀ ବାହାର କରିନେଲେ ଯେଉଁ ଦୁଗ୍ଧ ବାକିରହେ ସେହି ଦୁଗ୍ଧ ପାନ ମାଂସ ହ୍ରାସକାରିମାନଙ୍କ ପକ୍ଷରେ ବିଶେଷ ଉପକାରୀ । ଯଦି କେହି ପ୍ରଚୁର ପରିମାଣରେ ଉକ୍ତ ପ୍ରକାର ଦୁଗ୍ଧ ଆହାର ସମୟରେ ଏବଂ ଅନ୍ୟ ସମୟରେ ମଧ୍ୟେ ମଧ୍ୟେ ପାନ କରନ୍ତି, ତେବେ ପ୍ରତ୍ୟହ ତାଙ୍କ ଶରୀରରୁ ଏକ ପା ଲେଖାଏଁ ମାଂସ ହ୍ରାସ ପାଇବ । ତାହାଙ୍କୁ ଅବଶ୍ୟ ଶୀତଳ ଜଳରେ ସ୍ନାନ କରିବାକୁ ହେବ ଏବଂ ଖଣ୍ଡିଏ କଠିନ ଚର୍ମର ବ୍ରୁଶ ଦ୍ୱାରା ପୁନଃ ପୁନଃ ଗାତ୍ର ଘର୍ଷଣ କରିବାକୁ ହେବ । ସ୍ଥୂଳକାୟ ବ୍ୟକ୍ତିମାନଙ୍କର ଏପରି ସୁବିଧାଜନକ ଉପାୟ ପ୍ରତି ଅନାସ୍ଥା ପ୍ରଦର୍ଶନ କରିବା ଉଚିତ ନୁହେଁ ।

---

# ରୋଗୀର ପଥ୍ୟରେ ଡିମ୍ବ

ହଂସ ଓ କୁକୁଡ଼ା ଡିମ୍ବ ମଧ୍ୟରେ ଗୁଣଗତ ପାର୍ଥକ୍ୟ ଅତି ସାମାନ୍ୟ । ଉଭୟ ପ୍ରକାରର ଡିମ୍ବ ପୁଷ୍ଟିକର ଖାଦ୍ୟ ମଧ୍ୟରେ ପରିଗଣିତ । ଏଥି ସକାଶେ ରୋଗୀର ପଥ୍ୟ ରୂପେ ଡିମ୍ବ ବ୍ୟବହାର କରାଯାଇଥାଏ । ଆୟୁର୍ବେଦ ମତରେ ଡିମ୍ବ ଅତି ସ୍ନିଗ୍ଧ, ବାତଘ୍ନ ବଳକର ଏବଂ ବୀର୍ଯ୍ୟବର୍ଦ୍ଧକ ।

କଞ୍ଚା ଡମ୍ବ ରୋଗୀ ପକ୍ଷରେ ପ୍ରସିଦ୍ଧ । ଅର୍ଦ୍ଧସିଦ୍ଧ ଡ଼ମ୍ବ ମଧ୍ୟ ବ୍ୟବହାର କରାଯାଇଥାଏ, କିନ୍ତୁ ସୁସିଦ୍ଧ ଡ଼ମ୍ବ ଗୁରୁପାକ ହେତୁ ରୋଗୀର ଖାଦ୍ୟ ରୂପେ ବ୍ୟବହାର କରାଯାଏ ନାହିଁ । ବିଶେଷଜ୍ଞମାନଙ୍କ ମତରେ, କଞ୍ଚାଡ଼ମ୍ବ ଦୁଇଘଣ୍ଟା ମଧ୍ୟରେ ପରିପାକ ହୁଏ । ସୁସିଦ୍ଧ ଡ଼ମ୍ବ ପରିପାକ ହେବାକୁ ପ୍ରାୟ ୪ ଘଣ୍ଟା ସମୟ ଲାଗିଥାଏ ।

ଯକ୍ଷ୍ମା, ମଧୁମୂତ୍ର ପ୍ରଭୃତି ବିବିଧ କ୍ଷୟ ରୋଗରେ ଡିମ୍ବ ହିତକର ପଥ୍ୟ । ରସକର୍ପୂର ଖାଇ ଶରୀର ବିଷାକ୍ତ ହେଲେ ରୋଗୀର ଗଳଦେଶ ଓ ପାକାଶୟରେ ଜ୍ୱାଳା, ରକ୍ତଭେଦ, ବମନ, ଅବସନ୍ନତା ପ୍ରଭୃତି କୁଲକ୍ଷଣ ଉପସ୍ଥିତ ହୁଏ । ଏହି ଅବସ୍ଥାରେ ଡ଼ମ୍ବ ପରମୋପକାରୀ । ଗୋଟିଏ ଡ଼ମ୍ବ ଦୁଇରତି ରସ କର୍ପୂରର ଶକ୍ତି ନଷ୍ଟ କରେ । ବିଷମାତ୍ରାରେ ଅର୍ଥାତ୍ ଅଧିକ ପରିମାଣରେ ମହିରଗିରିୟା ସେବନ କଲେ ଯେଉଁ ବିଷଲକ୍ଷଣ ପ୍ରକାଶ ପାଏ, ତାହା ଡ଼ମ୍ବ ଭକ୍ଷଣ ଦ୍ୱାରା ବିଦୂରିତ ହୋଇଥାଏ । ରୋଗ ବିଶେଷରେ ଡ଼ମ୍ବ ଭିନ୍ନ ଭିନ୍ନ ପ୍ରକାରରେ ବ୍ୟବହାର କରାଯାଇଥାଏ । ଅବସନ୍ନ ରୋଗୀ-ମାନଙ୍କୁ ନିମ୍ନୋକ୍ତ ପ୍ରକାରରେ ପ୍ରସ୍ତୁତ ଡ଼ମ୍ବର ସରବତ୍ ବା ପ୍ରପାନକ ପ୍ରଦାନ କରାଯାଇଥାଏ ।

୧—ଦୁଇଟି ଡ଼ମ୍ବର କୁସୁମ ବା ହଳଦିଆ ଅଂଶ ଦୁଇ ଛଟାଙ୍କି ଶର୍କରା ସହିତ ଆଲୋଡ଼ନ କରି, ପରେ ଦେଡ଼ ଛଟାଙ୍କି ଗରମ ଜଳ ମିଶାଇ ସେବନ କରିବାକୁ ହେବ ।

୨—ଦୁଇଟି ଡ଼ମ୍ବର କୁସୁମ, ଗ୍ଲ'—ଗ୍ଲମଟରେ ଏକ ଗ୍ଲମଟ ଶର୍କରା, ଦୁଇ ଗ୍ଲମଟ ଦୁଧ ଏବଂ ଅର୍ଦ୍ଧପାଇଣ୍ଟ ସୋଡ଼ା-ଓ୍ୱାଟର୍ ଏକତ୍ରକରି ସେବନ କରାଇବ ।

ଯେକୌଣସି ପୀଡ଼ାରେ ଦୈହିକ ବଳକ୍ଷୟ ଆରମ୍ଭ ହେଲେ ଡ଼ମ୍ବର ସରବତ୍ ଉପକାରୀ ।

ଦୁଇଟି ଡ଼ମ୍ବର ଶ୍ୱେତାଂଶ ଜଳରେ ମିଶ୍ରିତକରି ତହିଁରେ ଚିନି, ଲେମ୍ବୁରସ ଓ ବରଫ ଯୋଗ କରିବ । ଏହି ପାନୀୟ ଟାଇଫଏଡ଼ ଜ୍ୱର ରୋଗୀକୁ ପାନ କରାଇଲେ ଉପକାର ହୁଏ ।

ଡ଼ମ୍ବର କୁସୁମରେ ଲୌହ ଘଟିତ ଲବଣ ଥାଏ । ଏହି ସକାଶେ ରକ୍ତହୀନ ରୋଗୀ ପକ୍ଷରେ ବିଶେଷ ଉପକାରୀ ।

ଦୁଇଟି ଡ଼ମ୍ବର କୁସୁମ ଗରମ ଜଳରେ ଢାଳି ତହିଁରେ ଅଳ୍ପ ପରିମାଣରେ ଦୁଧ, ଚିନି ଏବଂ କିଛି ବଡ଼ ଅଳେଇଚ ଏବଂ ଡାଲଚିନିରଗୁଣ୍ଡା ମିଶାଇ ବ୍ୟବହାର କରାଯାଏ ।

ବାତରୋଗୀକୁ ତ୍ରମ୍ବ ଅଳ୍ପ ପରିମାଣରେ ଦେବା ଉଚିତ । ଅର୍ଶ ରୋଗରେ ଏହା କୁପଥ୍ୟ । କୋଷ୍ଠବଦ୍ଧ ରୋଗୀ ପକ୍ଷରେ ତ୍ରମ୍ବ ସୁପଥ୍ୟ ନୁହେଁ । ପର୍ଯ୍ୟୁଷିତ ତ୍ରମ୍ବ ଏକାବେଳକେ ବର୍ଜ୍ଜନୀୟ; ତାହା କ ରୋଗୀ, କ ଭୋଗୀ ସମସ୍ତଙ୍କ ପକ୍ଷରେ ଅଖାଦ୍ୟ ।

ଅର୍ଦ୍ଧସେର ଗରମ ଜଳରେ ଏକଛଟାଙ୍କି ଲବଣ ମିଶାଇ ତହିଁରେ ତ୍ରମ ଛାଡ଼ିଦେଲେ ଯଦି ତ୍ରମ୍ବଟି ବୁଡ଼ିଯାଏ, ତେବେ ତାହା ବିକୃତ ହୋଇଅଛି ବୋଲି ମନେ କରିବ, ଏବଂ ବୁଡ଼ିଗଲେ ଅବିକୃତ ଅଛି ବୋଲି ବୁଝିବାକୁ ହେବ ।

---

# ପରୀକ୍ଷିତ ମହୌଷଧି

ବସନ୍ତ ପ୍ରତିଷେଧକ—ଆଙ୍ଗରାନ୍ତମୂଳ, ଏବଂ ଗୋଲମରିଚ ଏକତ୍ରରେ ସମାନ ମାତ୍ରାରେ ବାଟି ସେବନକଲେ, ବସନ୍ତରୋଗ ଆକ୍ରମଣ କରେ ନାହିଁ ।

ଅର୍ଶ ନିବାରକ—ଚିତ୍ର, ଜଙ୍ଘହରଡ଼ା, ପିପଳି, ଲିମ୍ବୁଣୀ, ଖୋସାଶୂନ୍ୟ କୃଷ୍ଣତିଳ, ଏକତ୍ର ମିଶ୍ରିତ କରି କୋଳି ପ୍ରମାଣରେ ବଟିକା ପ୍ରସ୍ତୁତ କରିବ । ଉକ୍ତ ବଟିକା ପ୍ରତ୍ୟହ ସକାଳ ଓ ସନ୍ଧ୍ୟା ସମୟରେ ସେବନ କଲେ ଅର୍ଶରୋଗ ଅଚିରେ ଆରୋଗ୍ୟ ହୁଏ ।

ପ୍ଲୀହା—ମାଟିଅସିନ୍ଦୂର, ପାନଡେମ୍ଫି, କଳମ୍ବି ଶାଗର ଡାଙ୍ଗ ସମଭାଗରେ ଆଣି ଶୀତଳ ଜଳରେ ବାଟି ଶିଶୁମାନଙ୍କ ପ୍ଲୀହା ଉପରେ ଲେପ ଦେଲେ ଅଚିରେ ପ୍ଲୀହା ଉପଶମ ହୁଏ ।

ଧବଳ ରୋଗ—ଶୋଧିତ ହରିତାଳ ଅର୍ଦ୍ଧ-ତୋଳା, ଅରଖକ୍ଷୀର ଏକତୋଳା, କାକୁଡ଼ିମଞ୍ଜି ଏକ ସିଉଳି ଓଜନରେ ଆଣି ଏକତ୍ର ପେଷଣକରି ଧବଳ ସ୍ଥାନରେ ଲେପ ଦେଲେ ଅବଶ୍ୟ ଧବଳରୋଗ ଉପଶମ ହେବ ।

ବ୍ରଣରୋଗ—ସାଜିମାଟି ଏବଂ ଚୂନକୁ ଅରଖକ୍ଷୀରରେ ବାଟି ବ୍ରଣ ମୁଖରେ ଲେପ ଦେଲେ ବ୍ରଣ ଫାଟିଯାଏ । ଆଉ ଅସ୍ତ୍ର କରିବାର ଆବଶ୍ୟକ ହୁଏ ନାହିଁ

ପାଳିଜ୍ୱର—ଅଗସ୍ତି ମୂଳର ଛାଲି, ଗୋଖରୁ, ହରଡ଼ା ଏବଂ ସୁଗନ୍ଧକ୍ୱାଥ ସେବନ କଲେ ବାତଜ୍ୱର, ଚତୁର୍ଥିକ ଜ୍ୱର ଏବଂ ଯାହିକଜ୍ୱର ଅର୍ଥାତ୍ ଏକଦିନ ଅନ୍ତରରେ ଯେଉଁ ଜର ହୁଏ, ତହିଁରେ ବିଶେଷ ଉପକାର ହୁଏ । ଏହି କ୍ୱାଥର ରକ୍ତପରିଷ୍କାରକ, ପ୍ରସ୍ରାବ ଦୋଷନାଶକ ଏବଂ ବଳକାରକ ଗୁଣ ଅଛି ।

ଘା—ସହିଋଗିରିଆ ଭସ୍ମକୁ ଜଳରେ ଗୋଳି ଖଣ୍ଡେ କନାର ଏକ ପାଖରେ ଲଗାଇ, ସେହି ପାଖ ଉପରକୁ ରଖି ଘା' ଉପରେ ପକାଇବ । ଅଥବା ନିମ୍ବର କୋମଳ

ପତ୍ରକୁ ଦୃତରେ ଉତ୍ତମରୂପେ ଭାଜି, ତାହାର ସୂକ୍ଷ୍ମ ଚୂର୍ଣ୍ଣ କରିବ ଏବଂ ସିନ୍ଦୂର ମିଶାଇ କ୍ଷତସ୍ଥାନରେ ଲଗାଇଲେ ଯେ କୌଣସି ପ୍ରକାରର ଘା ନିଶ୍ଚୟ ଉପଶମ ହେବ ।

ହିକ୍କା—ତାଳଫଳର ମଧ୍ୟଗତ ଶସ ( ଯାହା ନଡ଼ିଆ ପରି ଦିଶେ) ସେବନ କଲେ ହିକ୍କା ରୋଗ ଯେତେ କଠିନ ହୋଇଥିଲେ ସୁଦ୍ଧା ଅନତି ବିଳମ୍ବରେ ଉପଶମ ହୁଏ ।

---

## ମତ୍ସ୍ୟ ପ୍ରସଙ୍ଗ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ "ଉତ୍କଳ ମଧୁପ"ଅଗଷ୍ଟ, ୧୯୧୮ ଖ୍ରୀଷ୍ଟାବ୍ଦ, ୮ମ ଭାଗ, ୭ମ ସଂଖ୍ୟାରୁ )

ଖାଦ୍ୟଦ୍ରବ୍ୟ ମଧ୍ୟରେ ମତ୍ସ୍ୟ ଗୋଟିଏ ଉପାଦେୟ ଆବଶ୍ୟକୀୟ ଖାଦ୍ୟ ।

ଏସିଆ, ଇଉରୋପ, ଆମେରିକାର ଉତ୍ତର ଅଂଶରେ ମତ୍ସ୍ୟ ଅପର୍ଯ୍ୟାପ୍ତ ପରିମାଣରେ ମିଳେ । ଏହି ଦେଶର ଗରିବ ଲୋକ ଅନ୍ୟ ଖାଦ୍ୟ ନ ପାଇଲେ କେବଳ ମତ୍ସ୍ୟ ଆହାର କରି କୌଣସି ପ୍ରକାରେ ଦିନ ଯାପନ କରିଥାନ୍ତି । ସାଇବେରିଆ ଦେଶରେ ମତ୍ସ୍ୟ ଶୁଷ୍କକରି ମଇଦା ପ୍ରସ୍ତୁତ କରନ୍ତି । ତାହା ରୁଟିର ପରିବର୍ତ୍ତେ ବ୍ୟବହୃତ ହୁଏ ।

ମତ୍ସ୍ୟ ଧୃତ ହେବା ପରେ କିଛିକ୍ଷଣ ପର୍ଯ୍ୟନ୍ତ ସ୍ଥିତିସ୍ଥାପକ ଓ କୋମଳ ଥାଏ, ତତ୍ପରେ କଠିନ ଅବସ୍ଥା ପର୍ଯ୍ୟନ୍ତ ମତ୍ସ୍ୟର ସଦ୍ୟାବସ୍ଥା । କିଛିକ୍ଷଣ ଶକ୍ତ ଥାଇ ପୁନଶ୍ଚ କୋମଳ ହେବା ଆରମ୍ଭ ହୁଏ । ଦ୍ୱିତୀୟବାର କୋମଳ ଅବସ୍ଥା ହିଁ ମତ୍ସ୍ୟର ପତନାବସ୍ଥା । ତତ୍ପରେ ଫୁଲେ ଏବଂ ଦୁର୍ଗନ୍ଧଯୁକ୍ତ ହୁଏ ।

ସଦ୍ୟଧୃତ ମତ୍ସ୍ୟ ଖାଦ୍ୟୋପଯୋଗୀ । ଯେଉଁ ମତ୍ସ୍ୟ ଯେତେ ମୋଟା ବା ବହଳ ଅଟେ ଏବଂ କାନ୍ତି ଉଜ୍ଜ୍ୱଳ ଏବଂ ସ୍ପର୍ଶ କଲେ ଦୃଢ଼ଥିବାର ଅନୁମିତ ହୁଏ, ତାହା ସେତିକି ଭଲ । ଭଲ ମତ୍ସ୍ୟର କାନମୁଣ୍ଡା ଲୋହିତବର୍ଣ୍ଣ ଏବଂ ପେଟ ଆଣ୍ଠୁଥାଏ । ଯେଉଁ ସବୁ ମତ୍ସ୍ୟର କାନମୁଣ୍ଡା (ଗାଲିସି) ଉଜ୍ଜ୍ୱଳ ଓ ଆରକ୍ତିମ ନୁହେଁ ଏବଂ ଉଦର ପ୍ରଦେଶ ଶିଥିଳ, ଚକ୍ଷୁ କୋଟରଗତ, ସେ ସବୁ ମତ୍ସ୍ୟ ଆହାରଯୋଗ୍ୟ ନୁହେଁ । ସଦ୍ୟ ମତ୍ସ୍ୟର ଆମିଷ ଗନ୍ଧ ଉଣା ।

ଦୁଗ୍ଧ, ଘୃତ, ମାଂସ, ମିଷ୍ଟ ପ୍ରଭୃତି ସହିତ ମତ୍ସ୍ୟର ଅସମ୍ମିଳନ ଘଟେ । ଏହେତୁ ତାହା ଆହାର କଲେ ପୀଡ଼ା ଜାତ ହୁଏ ।

ସାଧାରଣତଃ ସକଳ ପ୍ରକାର ମତ୍ସ୍ୟ ହିଁ ମଧୁର ରସ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, ଗୁରୁପାକ, ପୁଷ୍ଟିକର, ବଳକାରକ, ଶୁକ୍ରବର୍ଦ୍ଧକ, ବାୟୁ ନାଶକ, ରକ୍ତପିତ୍ତକାରକ, କଫ ପିତ୍ତଜନକ, କ୍ଳାନ୍ତ ବ୍ୟକ୍ତିର ହିତକର, ଯେଉଁସବୁ ମତ୍ସ୍ୟ କାଟିଲେ ଲାଲବର୍ଣ୍ଣ ଦେଖାଯାଏ ସେହିସବୁ ମତ୍ସ୍ୟ ଅଧିକତର ପୁଷ୍ଟିକର ଏବଂ ସ୍ୱାଦୁ କିନ୍ତୁ ଦୁଷ୍ପାଚ୍ୟ । ରୋହିତ ପ୍ରଭୃତି ଏହି ଜାତୀୟ ।

ମତ୍ସ୍ୟ ନାନା ପ୍ରକାର ଏବଂ ନାନାପ୍ରକାର ଜଳରେ ବାସ କରନ୍ତି । ତନ୍ନିମିତ୍ତ ପ୍ରତ୍ୟେକ ପ୍ରକାର ମତ୍ସ୍ୟର ଗୁଣର ମଧ୍ୟ କିଛି କିଛି ପାର୍ଥକ୍ୟ ଅଛି ।

ଦର୍ଶନ ଯନ୍ତ୍ର ଉପରେ ମତ୍ସ୍ୟ ଭୋଜନ ହେତୁ ଅଧିକ ଫଳ ହୋଇଥାଏ । ଏ ହେତୁ ଦର୍ଶନ କ୍ରିୟା ତୀକ୍ଷ୍ଣ ବା ଅବ୍ୟାହତ ହୁଏ ।

ମସ୍ତିଷ୍କ ଉପରେ ମତ୍ସ୍ୟର କ୍ରିୟା ଅଧିକ, କାରଣ ମତ୍ସ୍ୟର ଫସ୍‌ଫରସର ଭାଗ ବେଶୀ ତହିଁ ପାଇଁ ଯେଉଁମାନେ ଅଧିକ ମସ୍ତିଷ୍କ ଚାଳନା କରନ୍ତି ଏବଂ ଚିନ୍ତା କରନ୍ତି, ସେମାନଙ୍କ ପକ୍ଷରେ ମତ୍ସ୍ୟ ବିଶେଷ ଉପକାରୀ ।

ରୋଗ ଉପଶମ ପରେ ଶରୀର ଦୁର୍ବଳଥିବା ସମୟରେ ମାଛର ଝୋଳ ଓ କ୍ୱାଥ ସେବନ କଲେ ଦୁର୍ବଳତା ଦୂର ହୁଏ ଏବଂ ବଳ ଜାତ ହୁଏ । କଉ, ଶିଙ୍ଗିମାଛର ରସ ଉଷ୍ଣ ଏବଂ ପେଶୀ କ୍ଷୁଦ୍ର ଓ କୋମଳ ବୋଲି ଏହିସବୁ ମତ୍ସ୍ୟ ରୋଗାନ୍ତ ଦୁର୍ବଳତାରେ ବିଶେଷ ଉପକାରୀ । ଉଦରାମୟ ଓ ଅମାଶୟ ରୋଗରେ କ୍ଷୁଦ୍ର ମତ୍ସ୍ୟର ଝୋଳ ସୁପଥ୍ୟ ।

ନିତ୍ୟ ସ୍ତ୍ରୀସେବୀ, କ୍ଷୀଣ ଶୁକ୍ର, ତେଜୋହୀନ, ଭଗ୍ନଦେହ ଓ ଜର୍ଜରିତ ବ୍ୟକ୍ତି ପକ୍ଷରେ ଦଗ୍ଧ ମତ୍ସ୍ୟ ଓ ରୋହିତ ମତ୍ସ୍ୟର ମସ୍ତକ ଉପକାରୀ । ରକ୍ତ, ପିତ୍ତ, କୁଷ୍ଠ, ଆମାଶୟ ଗ୍ରହଣୀ ଏବଂ ଶ୍ଳେଷ୍ମା ଘଟିତ ରୋଗରେ ମତ୍ସ୍ୟ ଅତ୍ୟନ୍ତ ଅପକାରୀ । ମତ୍ସ୍ୟ-ସେବନ ଦ୍ୱାରା ଏହିସବୁ ରୋଗ ବୃଦ୍ଧିଲାଭ କରିଥାଏ । ଯକ୍ଷ୍ମା ରୋଗରେ ମତ୍ସ୍ୟ ସେବନ କଲେ ଦୀର୍ଘକାଳ ଭଲ ଅବସ୍ଥାରେ ରହିବା ସମ୍ଭାବନା । ଉପଦଂଶ, କାଛୁକୁଣ୍ଡିଆ ଦୁଷ୍ଟକ୍ଷତ ପ୍ରଭୃତି ରୋଗ ମତ୍ସ୍ୟସେବନରେ ବୃଦ୍ଧି ହୁଏ ଏବଂ ପୀଡ଼ା ସହଜରେ ଆରୋଗ୍ୟ ହୁଏ ନାହିଁ ।

———

# ଚିକିତ୍ସା କ୍ଷେତ୍ରକୁ ବିଦ୍ୟାରତ୍ନଙ୍କ ଅବଦାନ

୧୮୯୧ ମସିହା । ଆଜିଠାରୁ ଠିକ୍ ୧୦୮ ବର୍ଷ ତଳର ଘଟଣା । କେବଳ ବଲାଙ୍ଗିର ଜିଲାର ବଙ୍ଗୋମୁଣ୍ଡା ପୋଲିସ ଥାନା ଅନ୍ତର୍ଗତ ଇଲାକାରେ ୧୫୭୮ ଜଣ ଲୋକ ବିସୂଚିକା (କଲେରା) ରୋଗରେ ସେହି ବର୍ଷ ମୃତ୍ୟୁବରଣ କରିଥିବା ଘଟଣା 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ ପାଇଲା । କେବଳ ବଙ୍ଗୋମୁଣ୍ଡା ନୁହେଁ ସାରା ଦେଶରେ ଲକ୍ଷ ଲକ୍ଷ ସଂଖ୍ୟାରେ ଲୋକେ ବିସୂଚିକା ରୋଗରେ ମରୁଥାନ୍ତି ।

ସେତେବେଳକୁ ଆଧୁନିକ ଚିକିତ୍ସା ପଦ୍ଧତିରେ ବିସୂଚିକା ରୋଗ ଚିକିତ୍ସାର କିଛି ସଠିକ ଚିକିତ୍ସା ପଦ୍ଧତି ବାହାରି ନଥାଏ । ସଂସାର ସାରା ଉପାୟ ଖୋଜୁଥାନ୍ତି ବିସୂଚିକାର କାରଣ ଜାଣିବା ପାଇଁ । ଠିକ୍ ସେହି ୧୮୯୧ ମସିହାରେ ଇଂଲଣ୍ଡର ଜନୈକ ଡାକ୍ତର ବିସୂଚିକା ରୋଗୀର ଝାଡ଼ା ଗୋଳେଇ ପାନକରି ବିସୂଚିକା ରୋଗରେ ଆକ୍ରାନ୍ତ ହେବାରୁ ଜଣାପଡ଼ିଲା ଯେ ପାନୀୟ ଜଳ ବା ଖାଦ୍ୟରେ ବିସୂଚିକା ଜୀବାଣୁ ଶରୀରକୁ ଗଲେ ଏ ରୋଗରେ ଲୋକେ ଆକ୍ରାନ୍ତ ହୁଅନ୍ତି ।

ବର୍ତ୍ତମାନ ଯେପରି କଲେରା, ଡାଇରିଆ, ଝାଡ଼ାବାନ୍ତି (ଗ୍ୟାଷ୍ଟ୍ରୋଏଣ୍ଟ୍ରାଇଟିସ୍) ଆଦି ବିଭିନ୍ନ ରୋଗର ଚିକିତ୍ସା ସହଜରେ କରାଯାଇପାରୁଛି ୧୦୮ ବର୍ଷ ତଳେ ତାହା ଅସମ୍ଭବ ଥିଲା, ମାତ୍ର ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଆୟୁର୍ବେଦ ଶାସ୍ତ୍ର ଅଧ୍ୟୟନ କରି ଏବଂ ଆୟୁର୍ବେଦୀ ଚିକିତ୍ସକମାନଙ୍କ ସହିତ ଆଲୋଚନା କରି ବିସୂଚିକା ରୋଗୀକୁ ଆରୋଗ୍ୟ କରିବା ପାଇଁ କେତେକ ଔଷଧ ଓ ଚିକିତ୍ସା ପଦ୍ଧତି ବାହାର କରିଥିଲେ । 'ସମ୍ବଲପୁର ହିତୈଷିଣୀ'ରେ ସେ ସବୁ ସମ୍ବାଦ ପ୍ରକାଶ କରୁଥିଲେ ।

ଏପରି ଏକ ସଙ୍କଟଜନକ ସମସ୍ୟାର ମୁକାବିଲା କରିବା ପାଇଁ ସେ ଯେଉଁ ପଦକ୍ଷେପ ୧୦୮ ବର୍ଷ ତଳେ ନେଇଥିଲେ ତାହାର ଦୃଷ୍ଟାନ୍ତ ସଂସାରରେ ବିରଳ । ଗୁରୁତ୍ୱ ଦୃଷ୍ଟିରୁ 'ହିତୈଷିଣୀ'ରେ ପ୍ରକାଶ ପାଇଥିବା ବିସୂଚିକା ଚିକିତ୍ସା ସମ୍ବନ୍ଧୀୟ କେତେକ ଲେଖା ତାଙ୍କର ୭୭ ତମ ଶ୍ରାଦ୍ଧବାର୍ଷିକୀ ଅବସରରେ ପ୍ରକାଶ କରୁଅଛୁ । ଏ ଦିଗରେ ଗବେଷଣା ହେଲେ ଚିକିତ୍ସାଶାସ୍ତ୍ରକୁ ବିରାଟ ଅବଦାନର ଆଶା ରହିଛି ।

—ସମ୍ପାଦକ

## ବିସୂଚୀକା ରୋଗର ଚିକିତ୍ସା ପାଇଁ ପରୀକ୍ଷିତ ଔଷଧ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ ଉତ୍କଳମଧୁପ' ଅକ୍ଟୋବର ୧୯୧୭ଖ୍ରୀଃ ୫ମଭାଗ, ୩ୟ ସଂଖ୍ୟାରୁ )

ଅରଖଚେରର ଗୁଲ ୮ ଭାଗ, ହଳଦୀ ଚୂର୍ଣ୍ଣ ୪ ଭାଗ, ପିପ୍‌ପଳୀଚୂର୍ଣ୍ଣ ଦୁଇଭାଗ, ସିପଚୂନ ଏକଭାଗ ଏକତ୍ରକରି ପଥର ଖଲରେ ଅଦାରସଦ୍ୱାରା ୨୪ ଘଣ୍ଟାକାଳ ମର୍ଦ୍ଦନ କରିବା ଆବଶ୍ୟକ । ତଦନନ୍ତର ପ୍ରାୟ ଚଣାରତି ମାତ୍ରାରେ ବଟିକା ପ୍ରସ୍ତୁତ କରି ରଖିବ । ବିସୂଚିକା ରୋଗର ଆବିର୍ଭାବ ସମୟରେ ପେଟପୀଡ଼ାର ସୂତ୍ରପାତ ହେଲେ ବା ତରଳ ଝାଡ଼ାହେଲେ ପ୍ରଥମ ଝାଡ଼ାପରେ ଗୋଟିଏ ବା ଦୁଇଟି ବଟିକା ଶୀତଳଜଳ ସହିତ ସେବନ କରିବ । ଉଦରାମୟ ଓ ବିସୂଚିକାର ପ୍ରଥମାବସ୍ଥାରେ ଉକ୍ତ ଔଷଧ ପ୍ରୟୋଗ କଲେ ଆଉ ଭୟର କାରଣ ରହିବ ନାହିଁ, ତଥାପି ପ୍ରତ୍ୟେକ ବାର ଝାଡ଼ାପରେ ଗୋଟିଏ ଗୋଟିଏ ସେବନ କଲେ ନିଶ୍ଚୟ ରକ୍ଷା ପାଇବ ବୋଲି ଡାକ୍ତର ଅନୁକୂଳଚନ୍ଦ୍ର ବିଶାରଦ ପ୍ରକାଶ କରି କହି ଅଛନ୍ତି – "ଉକ୍ତ ଉପାଦେୟ ଔଷଧଟି ସାଧାରଣ ମୁଷ୍ଟିଯୋଗ ନୁହେଁ । ବରୋଦା ରାଜ୍ୟରେ ବିସୂଚିକାରୋଗ ସଂକ୍ରାମକ ହେବା ସମୟରେ ଏହି ଔଷଧଟି ବ୍ୟବହୃତ ହୋଇଥିଲା । ତହିଁରେ ସୁଫଳ ଫଳିବାରୁ ୨୫ ବର୍ଷ ହେଲା ତାହା ଅବ୍ୟର୍ଥ ମହୌଷଧରୂପେ ବ୍ୟବହୃତ ହୋଇ ଆସୁଅଛି ।"

## ପ୍ଲେଗ ପ୍ରସଙ୍ଗ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳ ମଧୁପ," ୩ୟ ସଂଖ୍ୟା ୮ମ ଭାଗ, ମେ ମାସ ୧୯୧୮ ଖ୍ରୀଷ୍ଟାବ୍ଦ )

ଉତ୍କଳର ଚତୁର୍ଦ୍ଦିଗସ୍ଥ ପ୍ରଦେଶମାନ ପ୍ଲେଗ ରୋଗର ନୀଳାସ୍ଥଳ ହୋଇଅଛି । ଗଞ୍ଜାମ ସଂଲଗ୍ନ ବିଶାଖାପାଟଣା ଏମନ୍ତକି ବିଜୟନଗରରେ ପ୍ଲେଗର ଆବିର୍ଭାବ ହୋଇଥିବା କଥା ସମସ୍ତଙ୍କୁ ବିଦିତ ଅଛି । ସୁତରାଂ ପ୍ଲେଗ ରୋଗର ଉତ୍ପତ୍ତି କାରଣ, ରୋଗର ପ୍ରକୃତି, ରୋଗ ପ୍ରତିଷେଧକ ଏବଂ ଉପଶମ କାରକ ବିଷୟମାନ ଅମ୍ଭମାନଙ୍କର ଜାଣିରଖି ସତର୍କତା ଅବଲମ୍ବନ କରିବା ଉଚିତ । ପଞ୍ଜାବ ପ୍ରଦେଶରେ ପ୍ଲେଗ ରୋଗର ପ୍ରଭାବ ଅତ୍ୟଧିକ ହେତୁ ପଞ୍ଜାବ ଗଭର୍ଣ୍ଣମେଣ୍ଟ ସେ ସମ୍ବନ୍ଧରେ ବିଶେଷ ଅଭିଜ୍ଞତା ଅର୍ଜନ କରି ଯେଉଁ ଉପଦେଶ ପତ୍ର ପ୍ରଚାର କରିଛନ୍ତି, ତହିଁର ଅନୁବାଦ ନିମ୍ନରେ ପ୍ରକାଶ କରି-ଯାଉଅଛି ।

୧ । ବ୍ୟକ୍ତିର ଘରର ଯେଉଁ ବଖରାଟି ବଡ଼ ଏବଂ ଯେଉଁ ବଖରାରେ ବାୟୁ ନିର୍ବିଘ୍ନରେ ଚଳାଚଳ ହୁଏ, ସେହି ବଖରାର ଦ୍ୱାର ଏବଂ ଗବାକ୍ଷ ମୁକ୍ତ କରି ସେହି ବଖରାରେ ରୋଗୀକୁ ଶୁଆଇ ରଖିବାକୁ ହେବ । ସେ ସମୟରେ ବୃଷ୍ଟି ନ ଥିଲେ ରୋଗୀକୁ ଘରେ ନ ଶୁଆଇ ବାହାରେ ଅର୍ଥାତ୍ ଛପରଯୁକ୍ତ ପିଣ୍ଡାରେ ବା ଅଗଣାରେ ଶୁଆଇ ରଖିବାକୁ ହେବ ।

୨ । ରୋଗୀକୁ କେବଳ ତରଳ ପଦାର୍ଥ ପଥ୍ୟ ରୂପେ ଦେବାକୁ ହେବ ।

୩ । ରୋଗୀ ତୃଷାର୍ତ୍ତ ହେଲେ ତାହାକୁ ଯଥେଷ୍ଟ ଶୀତଳ ଜଳ ପାନ କରିବାକୁ ଦେବ । ଜଳ ଦାନରେ କୁଣ୍ଠିତ ହେଲେ କୁଫଳ ଘଟିଥାଏ ।

୪ । ଦୁଇ, ଦୁଇ ଘଣ୍ଟା ଅନ୍ତରରେ ରୋଗୀକୁ ଏକ ପଲ ଅନ୍ଦାଜ ଜଳରେ ଏକଟୋପା ଟିଞ୍ଚର-ଅଇଓଡିନ୍ ନାମକ ଡାକ୍ତରୀ ଔଷଧ ମିଶାଇ ସେବନ କରାଇବ । ରୋଗୀ ନିଦ୍ରିତ ହେଲେ ନିଦ୍ରାଭଙ୍ଗ କରି ଔଷଧ ସେବନ କରାଇବ ନାହିଁ ।

୫ । ସକାଳ ଓ ସନ୍ଧ୍ୟାବେଳେ ଦିନରେ ଦୁଇଥର ରୋଗୀର ବାଗୀ ଉପରେ ଟିଞ୍ଚର-ଅଇଓଡିନ ଲଗାଇବ, ଅନ୍ୟ କୌଣସି ପ୍ରକାର ଔଷଧ ବ୍ୟବହାର କରିବ ନାହିଁ ।

ପ୍ଲେଗ ରୋଗ, କେବଳ ଅଇଓଡିନ ପ୍ରୟୋଗ ଦ୍ୱାରା ଅନେକ ସ୍ଥଳରେ ପ୍ରଶମିତ ହୋଇଥାଏ ।

କୌଣସି କୌଣସି ଅଭିଜ୍ଞ ବ୍ୟକ୍ତିଙ୍କ ମତରେ ସୁସ୍ଥ ବ୍ୟକ୍ତିମାନେ ଆଇଓଡିନ୍ ଖାଇଲେ ସେମାନଙ୍କର ଆଉ ପ୍ଲେଗର ଭୟ ରହେ ନାହିଁ । ଯେଉଁ ସ୍ଥଳରେ ପ୍ଲେଗ ଆରମ୍ଭ ହୋଇଅଛି, ସେ ସ୍ଥଳରେ କୌଣସି ଲୋକର ଯଦି ଜ୍ୱର ହୁଏ ବା ଶରୀର ଅସୁସ୍ଥ ବୋଧ-ହୁଏ, ତେବେ କାଳବିଳମ୍ବ ନ କରି ବିରେଚନା (ଝାଡ଼ା) କରାଇବ । ଝାଡ଼ା ହେବା ପରେ ସକାଳ ଓ ସନ୍ଧ୍ୟା ସମୟରେ ୧ ଟୋପା ଲେଖାଏଁ ଟିଞ୍ଚର ଆଇଓଡିନ୍ ପାଞ୍ଚତୋଳା ଶୀତଳ ଜଳରେ ମିଶାଇ ସେବନ କରାଇବ । ଏତଦ୍ୱାରା ପ୍ଲେଗରୋଗ ନିବାରିତ ହେବ । ଉକ୍ତ ଔଷଧ ଡାକ୍ତରୀ ଔଷଧ ଦୋକାନମାନଙ୍କରେ ଏବଂ ଡାକ୍ତରଖାନାମାନଙ୍କରେ ସୁଲଭ ମୂଲ୍ୟରେ ମିଳେ ଏବଂ ତାହା ବ୍ୟଥା ନାଶ ସକାଶେ ବ୍ୟବହୃତ ହୋଇଥାଏ ।

---

# ସ୍ୱାସ୍ଥ୍ୟ ସମ୍ବନ୍ଧରେ ଦଶୋପଦେଶ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳ ମଧୁପ", ଅପ୍ରେଲ, ୧୯୧୬ ଖ୍ରୀଷ୍ଟାବ୍ଦ, ଷଷ୍ଠ ସଂଖ୍ୟା, ୯ମ ସଂଖ୍ୟାରୁ)

ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧରେ ଇଂଲଣ୍ଡର ଜଣେ ପ୍ରସିଦ୍ଧ ଡାକ୍ତର ଯେଉଁ ସାର ଉପଦେଶ ପ୍ରଦାନ କରିଅଛନ୍ତି, ତହିଁର ଉତ୍କଳାନୁବାଦ ନିମ୍ନରେ ପ୍ରକାଶ କରିଯାଉଅଛି ।

୧ । ପାକସ୍ଥଳୀକୁ ଯଦି ଭଲ ରଖିବାକୁ ଇଚ୍ଛାକର ତେବେ ଅଶ୍ୱ ପୃଷ୍ଠରେ ଆରୋହଣ କର ।

୨ । ନିଦ୍ରା ସୃଷ୍ଟିକର୍ତ୍ତାଙ୍କର ଅପୂର୍ବ ଦାନ, ଦୁଶ୍ଚିନ୍ତା ଦମନ କରି ନିଦ୍ରା ସୁଖ ସମ୍ଭୋଗ କର ।

୩ । ସୂର୍ଯ୍ୟାଲୋକ ଦେହରେ ଚର୍ମର ବର୍ଣ୍ଣ ମଳିନ କରେ ସତ୍ୟ, କିନ୍ତୁ ତାହା ପଦ୍ମର ମୂଳ ଉତ୍ଖାତ କରି ଗୋଲାପର ବୀଜ ବପନ କରେ ।

୪ । ମନୁଷ୍ୟର ଜୀବନ ତାହାର ନିଜ କାର୍ଯ୍ୟ ଉପରେ ନିର୍ଭର କରେ । ଅନେକଙ୍କର ମୃତ୍ୟୁ, ସ୍ୱାଭାବିକ ନୁହେଁ, ତାହା ଆତ୍ମହତ୍ୟା ମାତ୍ର ।

୫ । ସ୍ୱାସ୍ଥ୍ୟ ଅର୍ଥଦ୍ୱାରା କ୍ରୟ କରିଯାଏ ନାହିଁ; ତାହା ଉପାର୍ଜନ କରିବାକୁ ହୁଏ ।

୬ । ପ୍ରତ୍ୟେକ ନିଶ୍ୱାସ ପ୍ରଶ୍ୱାସରେ ବାୟୁ ପରିବର୍ତ୍ତନ ହୁଏ, ସତ, କିନ୍ତୁ ବାୟୁ ପରିବର୍ତ୍ତନ ଅପେକ୍ଷା ସ୍ଥାନ ପରିବର୍ତ୍ତନ ଶ୍ରେଷ୍ଠ ।

୭ । ଗୃହର ନିମ୍ନତଳର ପଙ୍କ ଜନିତ ଦ୍ୱାରା ଦ୍ୱିତଳବାସୀର ମୃତଦେହର ଆଚ୍ଛାଦନ ପ୍ରସ୍ତୁତ ହୁଏ ।

୮ । ଅବର୍ଜନା, ବ୍ୟଭିଚାର, ପୀଡ଼ା ଓ ମୃତ୍ୟୁ—ଗୋଟିଏ ଶୃଙ୍ଖଳାର ବିଭିନ୍ନ କଡ଼ା

୯ । ଅନେକେ ଟେନିସ୍, ବାଡ଼େମିଣ୍ଟନ ପ୍ରଭୃତି ଅଭ୍ୟାସ କରନ୍ତି, କାରଣ ତାହା ଭଦ୍ରଲୋକମାନଙ୍କର ଖେଳା; କିନ୍ତୁ ତାହା ଅପେକ୍ଷା ଧାବନ ଓ ଉଲ୍ଲମ୍ଫନ ଭଲ; ଯଦିବା ଲୋକେ ତାହାକୁ ଅଭଦ୍ରର ଖେଳା ବୋଲି ମନେ କରନ୍ତି । ପ୍ରଥମ ପ୍ରକାର ଖେଳା ଗୁରୁପ୍ରା, ଦ୍ୱିତୀୟ ପ୍ରକାର ଖେଳା ବସ୍ତ୍ର ।

୧୦ । ବାଳକମାନଙ୍କ ପରି ବାଳିକାମାନଙ୍କର ମଧ୍ୟ ସ୍ୱାସ୍ଥ୍ୟର ପ୍ରୟୋଜନ ଧାବନ ସେମାନଙ୍କର ଅତି ଉତ୍କୃଷ୍ଟ ବ୍ୟାୟାମ ।

---

# ସ୍ୱାସ୍ଥ୍ୟ ସମାଚାର (୧)

ପ୍ରଶ୍ନ—ଋତୁ ଭେଦରେ ପରିମର ହେଉ ବା ସୂତାର ହେଉ ବିଭିନ୍ନ ରଙ୍ଗର ବସ୍ତ୍ର ବ୍ୟବହାର ସହିତ ସ୍ୱାସ୍ଥ୍ୟର କୌଣସି ସମ୍ବନ୍ଧ ଅଛି କି ନା ?

ଉ—ଋତୁ ଭେଦରେ ରଙ୍ଗର ସହିତ ସ୍ୱାସ୍ଥ୍ୟର ସମ୍ବନ୍ଧ ଅଛି । ଶୀତକାଳରେ କଳା ରଙ୍ଗର ଏବଂ ଗ୍ରୀଷ୍ମକାଳରେ ସାଦା ରଙ୍ଗର ପରିଚ୍ଛଦ ସ୍ୱାସ୍ଥ୍ୟକର । କଳାରଙ୍ଗ ସୂର୍ଯ୍ୟ ରଶ୍ମିରୁ ତାପ ଶୋଷଣ କରିଥାଏ ଏବଂ ସ୍ୱଭାବତଃ ଅପେ ଗରମ ଥାଏ । ସାଦା ବା ଶୁକ୍ଳ ବର୍ଣ୍ଣର ପରିଚ୍ଛଦ ସୂର୍ଯ୍ୟ କିରଣରୁ ତାପ ଗ୍ରହଣ କରେ ନାହିଁ ବୋଲି ଗ୍ରୀଷ୍ମ କାଳରେ ଅଧିକ ଉପକାରୀ । ନାଲି ରଙ୍ଗ, ସାଧାରଣତଃ ବିଷାକ୍ତ ରାସାୟନିକ ଦ୍ରବ୍ୟଦ୍ୱାରା ପ୍ରସ୍ତୁତ ହୁଏ । ତାହା ମଧ୍ୟରେ ଶଙ୍ଖୁଆ ବିଷ ଥିବାର ସମୟେ ସମୟେ ଦେଖାଯାଇ ଥାଏ । ଏଥିପାଇଁ ଅଳମୂଲ୍ୟ ବିଶିଷ୍ଟ ନାଲି ରଙ୍ଗର ପରିଚ୍ଛଦ ସାବଧାନତାର ସହିତ ବ୍ୟବହାର ଉଚିତ ।

ପ୍ରଶ୍ନ—କପାତୁଳା ବା ଶିମିଳୀ ତୁଳାରେ ପ୍ରସ୍ତୁତ ଶେଯ ବା ଗଦିରେ କୌଣସି ପ୍ରଭେଦ ଅଛି ନା ? ଶିମିଳୀ ତୁଳାର ଶଯ୍ୟାରେ ଶୋଇଲେ ବାତରୋଗ ହୁଏ ବୋଲି କେହି କେହି କହନ୍ତି । ଏ କଥା ସତ୍ୟ କି ନା ?

ଉ—କପା ଓ ଶିମିଳୀ ତୁଳାରେ ଗଦି ବା ରେଜେଇ ପ୍ରଭୃତିରେ କିଛି ମାତ୍ର ପ୍ରଭେଦ ନାହିଁ । ଅଳସ, ଅତିଭୋଜନକାରୀ ଧନୀଲୋକମାନଙ୍କ ମଧ୍ୟରେ ଅନ୍ୟାନ୍ୟ କାରଣରୁ ବାତବ୍ୟାଧି, ଅନୁପାତରେ ବେଶୀ ହୋଇଥାଏ । ଏଥିପାଇଁ ବୋଧହୁଏ ଶିମିଳୀ ତୁଳାର ବ୍ୟବହାର ପ୍ରତି ଦୋଷାରୋପ କରାଯାଇଥାଏ । ଯେହେତୁ ଧନୀମାନେ ଶିମିଳୀ ତୁଳାର ଗଦି ପ୍ରଭୃତି ଅଧିକ ବ୍ୟବହାର କରିଥାନ୍ତି ।

ପ୍ରଶ୍ନ—ଅଶ୍ୱାରୋହଣ ସହିତ ଏକଶିରା ରୋଗର କୌଣସି ସମ୍ବନ୍ଧ ଅଛି କି ନା ? ଥିଲେ ତାହାର କାରଣ ଏବଂ ପ୍ରତିକାରର ଉପାୟ କ'ଣ ?

ଉ—ଅଶ୍ୱାରୋହଣ କଲେ ଅଣ୍ଡକୋଷ ଘର୍ଷଣ ହେତୁ ଏକଶିରା ରୋଗ ହୋଇଥାଏ । ଯେଉଁମାନଙ୍କର ଅଣ୍ଡକୋଷ ସ୍ୱାଭାବିକ ଅପେକ୍ଷା ବଡ଼, ପ୍ରାୟ ସେହିମାନେ ଉକ୍ତ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଯେପରି ଅଣ୍ଡକୋଷ ଘର୍ଷିତ ନ ହୁଏ, ଏପରି ସାବଧାନତାର ସହିତ ଅଶ୍ୱାରୋହଣ କଲେ କୋଷବୃଦ୍ଧି ହେବ ନାହିଁ ।

ପ୍ରଶ୍ନ—ହିନ୍ଦୁ ଶାସ୍ତ୍ରରେ ଉତ୍ତର ଓ ପଶ୍ଚିମ ଦିଗକୁ ମସ୍ତକରଖି ଶୟନ କରିବା ନିଷିଦ୍ଧ । ଏ ସମ୍ବନ୍ଧରେ ବୈଜ୍ଞାନିକମାନଙ୍କର ମତ କ'ଣ ?

ଉ—ଉତ୍ତର ଓ ପଶ୍ଚିମ ଦିଗକୁ ମସ୍ତକ ରଖିବା ସମ୍ବନ୍ଧରେ ବୈଜ୍ଞାନିକମାନଙ୍କର କୌଣସି ମତ ନାହିଁ ।

---

## ସ୍ୱାସ୍ଥ୍ୟ ସମାଚାର (୨)

ପ୍ରଶ୍ନ—ଶାକଖାଇଲେ କି ଉପକାର ବା ଅପକାର ହୁଏ, ଏବଂ ତାହା ରୋଗୀମାନଙ୍କର ଖାଇବା ଉଚିତ କି ନା ?

ଉ—ଶାକ ଖାଇଲେ କୋଷ୍ଠ ପରିଷ୍କାର ହୋଇଥାଏ, ଅଜୀର୍ଣ୍ଣ ରୋଗୀମାନଙ୍କର ଅଧିକ ଶାକ ଭକ୍ଷଣ ହେତୁ ରୋଗବୃଦ୍ଧି ହୋଇ ପାରେ ।

ପ୍ରଶ୍ନ—ପିଆଜ ଓ ରସୁଣର ଉପକାରିତା କ'ଣ ?

ଉ—ପିଆଜ ଓ ରସୁଣ କ୍ଷୟରୋଗପକ୍ଷରେ ଉପକାରୀ ବୋଲି ଅନେକେ ମନେ କରନ୍ତି ।

ପ୍ରଶ୍ନ—ଘୃତ ଓ ନବନୀତ ଖାଇଲେ ସ୍ମୃତିଶକ୍ତି ବୃଦ୍ଧିପାଏ କି ନା ?

ଉ—କୌଣସି ଖାଦ୍ୟ ବିଶେଷର ସହିତ ସ୍ମୃତି ଶକ୍ତିର ସମ୍ବନ୍ଧ ନାହିଁ, କିନ୍ତୁ ଘୃତ, ନବନୀତ ଅଧିକ ପୁଷ୍ଟିକର ହେତୁ ଶରୀରର ପୁଷ୍ଟିସାଧନ ସହିତ ସ୍ମୃତି-ଶକ୍ତିର ମଧ୍ୟ ପୁଷ୍ଟିସାଧନ କରେ ।

ପ୍ରଶ୍ନ—କାଷ୍ଠ-ପାଦୁକା ବ୍ୟବହାର ହେତୁ ଦୃଷ୍ଟିଶକ୍ତି ହ୍ରାସ ହୁଏ କି ନା ?

ଉ—କାଷ୍ଠ ପାଦୁକା ସହିତ ଦୃଷ୍ଟିଶକ୍ତିର କୌଣସି ସମ୍ବନ୍ଧ ନାହିଁ ।

ପ୍ର—ସର୍ଦ୍ଦି ସମୟରେ ଦୁଗ୍ଧ ପାନ କଲେ କୌଣସି ପ୍ରକାର ଅନିଷ୍ଟର ଆଶଙ୍କା ଅଛି କି ନାହିଁ ?

ଉ—କୌଣସି ପ୍ରକାର ଅନିଷ୍ଟ ହେବାର କାରଣ ନାହିଁ ।

ପ୍ର—ଅନେକଙ୍କ ମତରେ ମସୁରଡାଲିର ଯୂଷ, ମାଂସର ଯୂଷ ଅପେକ୍ଷା ବଳକର, ପୁଷ୍ଟିକର ଓ ନିରାପଦ, ଏ ପ୍ରବାଦ ସତ୍ୟ କି ନା ?

ଉ—ମସୁର ଡାଲିର ଯୂଷ, ମାଂସର ଝୋଳ ବା ସୁପ ଅପେକ୍ଷା ଅଧିକ ପୁଷ୍ଟିକର । କିନ୍ତୁ ମାଂସର ଯୂଷରେ ଏପରି କେତେ ଗୁଡ଼ିଏ ପଦାର୍ଥ ଅଛି, ଯାହା ମସୁର

ଡାଲରେ ନାହିଁ । ସାଧାରଣତଃ ମାଂସର ଯୂଷ ବ୍ୟବସ୍ଥା କରାଯାଇଥିବା ସ୍ଥଳରେ ମସୁର ଡାଲିର ଯୂଷ ବ୍ୟବହାର କରାଯାଇପାରେ ।

ପ୍ର—ଜ୍ୱର ହେଲେ (ବିଶେଷତଃ ମେଲେରିଆ ଜ୍ୱରରେ) ଦୁଗ୍ଧ ପାନ କରିବ କି ନା ?

ଉ—ଜ୍ୱରରେ ଦୁଗ୍ଧ ହିଁ ସର୍ବୋତ୍କୃଷ୍ଟ ଖାଦ୍ୟ ।

ପ୍ର—ଦିନେ ଜଳକୁ ସିଦ୍ଧ କରି କେତେଦିନ ପର୍ଯ୍ୟନ୍ତ ସେହି ଜଳ ନିର୍ଦ୍ଦୋଷ-ପାନୀୟ ଜଳ ରୂପେ ବ୍ୟବହାର କରାଯାଇପାରେ କି ନା ?

ଉ—ସାଧାରଣତଃ ୨।୩ ଦିନପରେ ସେପରି ଜଳ ପାନୀୟ ରୂପେ ବ୍ୟବହାର କରିବା ଉଚିତ ନୁହେଁ ।

ପ୍ର—ଶୀତଳ ଜଳ ପାନ ନ କରି ଉଷ୍ଣ ଜଳ ପାନ କରିବା ବାତରୋଗୀ ପକ୍ଷରେ ଉପକାରୀ କି ନା ?

ଉ—ଗରମ ଜଳ ପାନ ହେତୁ ମୂତ୍ର ଓ ଘର୍ମ ଅଧିକ ନିଃସରଣ ହୋଇଥାଏ ଏବଂ କୋଷ୍ଠ ସରଳ ହୁଏ ବୋଲି ବାତରୋଗରେ ଉପକାର ହୁଏ ।

ପ୍ର—ଅନେକ ଲୋକ ଅର୍ଦ୍ଧଦଗ୍ଧ (ଦରପୋଡ଼ା) ତମାଖୁ ପତ୍ରର ଚୂର୍ଣ୍ଣଦ୍ୱାରା ଦନ୍ତମାର୍ଜନ କରିଥାନ୍ତି, ଏହାଦ୍ୱାରା ଦନ୍ତର ବା ଶରୀରର କୌଣସି ଉପକାର ହୁଏ କି ନା ?

ଉ—ଏହାଦ୍ୱାରା କିଛି ମାତ୍ର ଉପକାର ନ ହୋଇ ତମାଖୁ ସେବନ ଘଟିତ ସକଳ ପ୍ରକାର ଅପକାର ହୋଇଥାଏ ।

ପ୍ର—ମିଷ୍ଟ ସଂଯୋଗରେ ଦୁଗ୍ଧପାନ ଏବଂ କେବଳ ଦୁଗ୍ଧପାନ ଏ ଉଭୟ ମଧ୍ୟରେ ଗୁଣର ତାରତମ୍ୟ ଅଛି କି ନା ?

ଉ—ଦୁଧ ସହିତ ଚିନି ମିଶ୍ରିତ ଥିଲେ ତାହା ପାକସ୍ଥଳୀ ମଧ୍ୟରେ ଡେଡେ ଶକ୍ତରୂପ ବାନ୍ଧେ ନାହିଁ । ଏଥିପାଇଁ କିଞ୍ଚିତ ଶୀଘ୍ର ପରିପାକ ହୁଏ । ଏହି କାରଣରୁ ଦୁଧ ସହିତ ଭାତ ବା ରୁଟି ଖାଇଲେ ଦୁଧ ପରିପାକର ସହାୟତା କରିଥାଏ ।

# ବିଦ୍ୟାର୍ଥୀଙ୍କ ବିବିଧ ତଥ୍ୟ

## ମନୁଷ୍ୟ ହୃଦୟର ଶକ୍ତି

ମନୁଷ୍ୟ ହୃଦୟ ଓଜନରେ କେବଳ ୧୧ ଆଉନ୍‌ସ ବା ପ୍ରାୟ ୫୨ ଛଟାଙ୍କି ମାତ୍ର । କିନ୍ତୁ ଏହା ଏତେ ଶକ୍ତିଶାଳୀ ଯେ ପ୍ରତ୍ୟେକ ଦିନ ଯେଉଁ କାର୍ଯ୍ୟ କରେ ତଦ୍ଦ୍ୱାରେ ୧୬୦ ଟନ୍ ଓଜନର ଜିନିଷକୁ ଏକଫୁଟ୍ ଊର୍ଦ୍ଧ୍ୱକୁ ଉତ୍ତୋଳନ କରାଯାଇପାରେ । ଆକାର ତୁଳନାରେ ଏହାପରି ଅଦ୍ଭୁତ ଶକ୍ତିଶାଳୀ ଯନ୍ତ୍ର ଅତି ଅଳ୍ପ ଅଛି । ଏହା ଏକ ମିନିଟ୍‌ରେ ପ୍ରାୟ ୭୦ ବାର ସ୍ପନ୍ଦିତ ହୁଏ ଏବଂ ପ୍ରତ୍ୟେକ ସ୍ପନ୍ଦନର ସହିତ ପ୍ରାୟ ୬ ଆଉନ୍‌ସ ବା ତିନି ଛଟାଙ୍କି ରକ୍ତ ଦେହ ମଧ୍ୟରେ ସବେଗରେ ପ୍ରବେଶ କରାଇଦିଏ । ବର୍ଷରେ ଏହା ୩ କୋଟିବାର ସ୍ପନ୍ଦିତ ହୋଇ ୫ ହଜାର ଟନ୍ ଅଥବା ୧ ଲକ୍ଷ ୪୦ ହଜାର ମହଣ ରକ୍ତ ଦେହ ମଧ୍ୟରେ ଚାଳିତ କରେ । ମନୁଷ୍ୟର ଜୀବନକାଳ ପ୍ରାୟ ୭୦ ବର୍ଷ ଧରିଲେ, ଏହି ସମୟ ମଧ୍ୟରେ ଯେଉଁ ରକ୍ତ ଏହି ହୃଦ୍‌ଯନ୍ତ୍ରଦ୍ୱାରା ଚାଳିତ ହୁଏ, ତାହାର ଓଜନ ଜଗତ ମଧ୍ୟରେ ବୃହତ୍ତମ ୬ ଖଣ୍ଡ ଜାହାଜ ଅପେକ୍ଷା ଅଧିକ ହେବ ।

## ମୁକ୍ତ ବାୟୁର ଗୁଣ

( ଉତ୍କଳ ମଧୁପ : ୪ର୍ଥ ସଂଖ୍ୟା ୮ମ ଭାଗ, ଜୁନ୍, ୧୯୧୮ )

ଅନ୍ୟାନ୍ୟ ଦେଶ ତୁଳନାରେ ଅଷ୍ଟ୍ରେଲିଆର ମୃତ୍ୟୁ ସଂଖ୍ୟା ଅଳ୍ପ । ଅନେକଙ୍କ ମତରେ ମୁକ୍ତ ବାୟୁର ଅଧିକ ବ୍ୟବହାର ଏଥିର କାରଣ । ସାମାନ୍ୟ ଶ୍ରମଜୀବୀର କୁଟୀରରେ ଚୁଲ୍ଲୀ, ବାହାରରେ ଶୋଇବା ସକାଶେ ପିଣ୍ଡା ପ୍ରସ୍ତୁତ କରାଯାଇଥାଏ । ଅନ୍ୟାନ୍ୟ ଦେଶ ଅପେକ୍ଷା ଅଷ୍ଟ୍ରେଲିଆରେ ମୁକ୍ତ ବାୟୁରେ ଶୟନ କରିବା ପ୍ରଥାର ପ୍ରଚଳନ ଅଧିକ ।

ନିୟମିତ ବ୍ୟାୟାମର ସୁଫଳ : ସମଗ୍ର ଇଉରୋପ ମଧ୍ୟରେ ସୁଇଡେନର ଲୋକମାନେ ଦୀର୍ଘକାୟ ଏବଂ ସେମାନଙ୍କର ଶାରୀରିକ ଗଠନ ଉତ୍ତମ । ପ୍ରାଥମିକ ବିଦ୍ୟାଳୟ ସମୂହରେ ବ୍ୟାୟାମ ସମ୍ବନ୍ଧରେ ଅଲଙ୍ଘନୀୟ ବ୍ୟବସ୍ଥା ଥିବା ହିଁ ସେମାନଙ୍କର ଏପରି ଶାରୀରିକ ଉନ୍ନତିର କାରଣ ।

# କଞ୍ଚା ତେନ୍ତୁଳୀ

"ଚକ୍ଷୁଷା ଦର୍ଶନ" ନାମକ ମାସିକ ପତ୍ରିକାର ଡାକ୍ତର ସମ୍ପାଦକ, କଞ୍ଚା ତେନ୍ତୁଳୀର ଉପକାରିତା ସମ୍ବନ୍ଧରେ ଲେଖିଅଛନ୍ତି—"ଥରେ ମୁଁ ଘୋଡ଼ାରୁ ପଡ଼ିଯାଇ ମଣିବନ୍ଧରେ ବିଶେଷ ଆଘାତପ୍ରାପ୍ତ ହେଲି । ଆଘାତ ପରେ ପ୍ରଥମେ ଜଳପଟି, ତତ୍ପରେ ଅଫିମ ଘଟିତ ଔଷଧ ସହ ନାନାବିଧ ବ୍ୟଥାନାଶକ ଡାକ୍ତରୀ ଔଷଧ ପ୍ରୟୋଗ କଲି, ତଥାପି କବ୍‌ଜର ଅସହ୍ୟ ବେଦନା ଉପଶମ ହେଲା ନାହିଁ । ମୁଁ ନିଜେ ଡାକ୍ତର; ଆମ୍ଭମାନଙ୍କ ପୁସ୍ତକରେ ଯାହା କିଛି ବେଦନା ନାଶକ ଔଷଧ ବୋଲି ଲିଖିତ ଅଛି, ସେ ସବୁ ବ୍ୟବହାର କଲି, ମାତ୍ର ତହିଁରେ ଉପକାର ହେବା ତେଣେ ଥାଉ ଉତ୍ତରୋତ୍ତର ଯାତନାର ବୃଦ୍ଧି ହେଲା । ଗୃହରେ ମୋର ଏକ ବୃଦ୍ଧା-ଭଗିନୀ ଥିଲେ । ସେ ମୋର କଷ୍ଟ ଦେଖି ଦିନେ କଞ୍ଚା ତେନ୍ତୁଳିକୁ ଘୋଡ଼ି ତହିଁର ଗରମ ରସ ମୋର ବେଦନା ସ୍ଥାନରେ ବୋଳି ଦେଇ ତାହା ଉପରେ ସାଧାରଣ ଲବଣ ମଡ଼ାଇଦେଲେ । ଉଷ୍ଣଥିବା ହେତୁ ଆରାମବୋଧ ହେବାରୁ ଶୋଇପଡ଼ିଲି । ନିଦ୍ରାଭଙ୍ଗ ପରେ ଜାଣିଲି, ବେଦନାର ବାରପଣ ଊଣାପଡ଼ି ଯାଇଛି । ତଦନନ୍ତର ସେହିପରି ଆଉ ତିନିଚାରିଥର ଲେପଦେବାରୁ ସମସ୍ତ ବେଦନା ଓ ଯାତନା ଉପଶମ ହେଲା ।"

ମୁଁ ପୂର୍ବପରି ଘୋଡ଼ାରେ ଚଢ଼ିବା ଏବଂ ଅଧମଣ ଓଜନର ବୋଝ ଟେକିବା ପ୍ରଭୃତି ସକଳ କାର୍ଯ୍ୟ ସ୍ୱଚ୍ଛନ୍ଦରେ କରି ପାରିଲି । ତତ୍ପରେ ମୁଁ ଉକ୍ତ ଔଷଧ ଅନେକଙ୍କୁ ଦେଇ ଆଶ୍ଚର୍ଯ୍ୟ ଫଳଲାଭ କରିଅଛି । ମୋର ଦୃଢ଼ ବିଶ୍ୱାସ, ଆଘାତ ଜନିତ ବେଦନା ପକ୍ଷରେ କଞ୍ଚା ତେନ୍ତୁଳୀହାପୋଡ଼ାର କ୍ଷମତା ବେଲାଡୋନା ଓ ଆଇଡ଼ିନ୍ ପ୍ରଭୃତି ଡାକ୍ତରୀ ବ୍ୟଥାନାଶକ ଔଷଧ ଅପେକ୍ଷା ବହୁଗୁଣରେ ଶ୍ରେଷ୍ଠ ।

# ରଙ୍ଗ ପ୍ରସଙ୍ଗ

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦିତ "ଉତ୍କଳ ମଧୁପ" ଅଗଷ୍ଟ, ୧୯୧୮, ୮ମ ଭାଗ, ୭ମ ସଂଖ୍ୟାରୁ )

ଅମ୍ଭମାନଙ୍କ ମନର ସହିତ ଜଗତର ନାନା ବର୍ଣ୍ଣର ବିଚିତ୍ର ରଙ୍ଗର ଗୋପନ ସମ୍ବନ୍ଧ ଅଛି । କୌଣସି ଲୋକକୁ ଯଦି ଗୋଟିଏ ଲାଲବର୍ଣ୍ଣର ଘର ମଧ୍ୟରେ ଦିନେ ଦୁଇଦିନ ବନ୍ଦକରି ରଖାଯାଏ, ତେବେ ସେ ପାଗଳ ହୋଇଯିବ । ଯଦି ନୀଳ ବା ସବୁଜ ବର୍ଣ୍ଣ ରଙ୍ଗରେ ରଞ୍ଜିତ ଗୃହରେ ଅଧିକକ୍ଷଣ ଅବସ୍ଥାନ କରାଯାଏ, ତେବେ ଚକ୍ଷୁ

ଶୀତଳ ରହେ । ପ୍ରଭାତରେ ଶଯ୍ୟା ତ୍ୟାଗ କରି ଶୁଭ୍ର ଉଜ୍ଜ୍ୱଳ ଅରୁଣାଲୋକରେ ବହିର୍ଗତ ହେଲେ ହୃଦୟ ଆନନ୍ଦରେ ନାଚିଉଠେ, ଦେହ ଓ ମନରେ ନବବଳର ସଞ୍ଚାର ହୁଏ ଏବଂ କାର୍ଯ୍ୟ କରିବାକୁ ସ୍ଫୂର୍ତ୍ତି ଜାତ ହୁଏ । ପ୍ରଭାତର ଆକାଶ ଧୂସର ମଳିନ ଶକ୍ତିହୀନ ହେଲେ ଦେହ ଓ ମନ ଅବସାଦଗ୍ରସ୍ତ ହୁଏ । ଆମ୍ଭମାନଙ୍କ ଅଜ୍ଞାତରେ ରଙ୍ଗର ଐନ୍ଦ୍ରଜାଲିକ ଶକ୍ତି ଆମ୍ଭମାନଙ୍କ ଦେହ ଓ ମନରେ ଆମ୍ଭମାନଙ୍କ ଚିନ୍ତା ଓ ଚେଷ୍ଟାରେ ଆପଣାର ପ୍ରଭାବ ବିସ୍ତାର କରୁଅଛି ।

## ମାଦକ ଦ୍ରବ୍ୟର ଅପକାରିତା

ପୃଥିବୀର ସକଳଦେଶରେ ସୁବିଜ୍ଞ ଚିକିତ୍ସକମାନେ ମାଦକ ଦ୍ରବ୍ୟର ଅପକାରିତା ସମ୍ବନ୍ଧରେ ଆପଣା ଆପଣାର ସ୍ୱପକ୍ଷଯୁକ୍ତ ଯେଉଁ ଘୋଷଣାପତ୍ର ପ୍ରଚାର କରିଅଛନ୍ତି, ତହିଁର ଅନୁବାଦ ନିମ୍ନରେ ପ୍ରକାଶ କରାଯାଉଅଛି । ସେମାନେ ଲେଖିଅଛନ୍ତି—

"ସାବଧାନତାର ସହିତ ଯେଉଁସବୁ ବୈଜ୍ଞାନିକ ପରୀକ୍ଷା କରାଯାଉଅଛି ଏବଂ ତଦ୍ୱାରା ଆମ୍ଭେମାନେ ଯେତେଦୂର ଜାଣି ପାରିଅଛୁଁ, ତହିଁରେ ପ୍ରତିପନ୍ନ ହୋଇଅଛି ଯେ—

୧ । ମଦ୍ୟ, କୋକେନ, ଅଫିମ, ଗଞ୍ଜେଇ, ଭାଙ୍ଗ ପ୍ରଭୃତି ମାଦକ ଦ୍ରବ୍ୟଗୁଡ଼ିକର ପ୍ରତ୍ୟେକଟି ବିଷଗୁଣ ସମ୍ପନ୍ନ ।

୨ । ସେହିସବୁ ଦ୍ରବ୍ୟ ସାମାନ୍ୟ ପରିମାଣରେ ବ୍ୟବହାର କଲେ ମଧ୍ୟ (ବିଶେଷତଃ ଭାରତବର୍ଷ ପରି ଗ୍ରୀଷ୍ମପ୍ରଧାନ ଦେଶରେ) ଦେହର ଅନିଷ୍ଟ ସାଧିତ ହୁଏ । ଭ୍ରାନ୍ତ ବିଶ୍ୱାସବଶତଃ, ଅନେକ ଶାରୀରିକ ଓ ମାନସିକ ଦୁର୍ବଳତା ଦୂରକରିବା ନିମିତ୍ତ ସେହିସବୁ ପଦାର୍ଥ ବ୍ୟବହାର କରିଥାନ୍ତି । କିନ୍ତୁ ସେ ସବୁ ବ୍ୟବହାର ଦ୍ୱାରା ଏ ସମ୍ବନ୍ଧରେ ସ୍ଥାୟୀ ଉପକାର ହୁଏ ନାହିଁ ।

୩ । ଯେଉଁମାନେ କୌଣସି ପ୍ରକାରେ ମାଦକ ଦ୍ରବ୍ୟ ସ୍ପର୍ଶ କରନ୍ତି ନାହିଁ ଏବଂ ମଦ୍ୟ ଯହିଁରେ ନାହିଁ ଏପରି ପାନୀୟ ଗ୍ରହଣ କରିଥାନ୍ତି, ସେହିମାନେ ପରିଶ୍ରମଜନିତ କ୍ଲାନ୍ତି ଅଧିକ ପରିମାଣରେ ସହ୍ୟକରି ପାରନ୍ତି ଏବଂ ବିବିଧ ସଂକ୍ରାମକବ୍ୟାଧି ଓ ଅନ୍ୟାନ୍ୟ ରୋଗର ଆକ୍ରମଣରୁ ଆପଣା ଆପଣାକୁ ରକ୍ଷାକରିବାକୁ ସମର୍ଥ ହୋଇଥାନ୍ତି ।

୪। ମାଦକ ଦ୍ରବ୍ୟ ବ୍ୟବହାର ହେତୁ ଭବିଷ୍ୟତ୍ ବଂଶଧରମାନଙ୍କ ମଧ୍ୟରେ ନାନା ଅନିଷ୍ଟ ଘଟିବାର ଦେଖାଯାଇଅଛି । ଅପବିତ୍ର ସହବାସ ଜନିତ କଠିନସ୍ପ ଶୋଷଣରୋଗ, ମାଦକଦ୍ରବ୍ୟ ସେବନ ହେତୁ ପ୍ରବଳ ହୋଇ ସନ୍ତାନ ପ୍ରଭୃତିମାନଙ୍କ ମଧ୍ୟରେ ଆଧିପତ୍ୟ ବିସ୍ତାର କରେ ।

୫। ଦେଶରେ ଦୁର୍ଭିକ୍ଷ ଉପସ୍ଥିତ ହେଲେ ମଦ୍ୟପାନ ଦ୍ୱାରା ଦୁର୍ଭିକ୍ଷର କଷ୍ଟ ଶତଗୁଣରେ ବର୍ଦ୍ଧିତ ହୋଇଥାଏ ।

୬। ସୁରାର ପ୍ଲେଗ ରୋଗ ନିବାରଣ କରିବାର କ୍ଷମତା ନାହିଁ ।

୭। ମେଲେରିଆ, ଯକ୍ଷ୍ମା ପ୍ରଭୃତି ସଂକ୍ରାମକ ରୋଗର ଆକ୍ରମଣରୁ ରକ୍ଷା ପାଇବା ସକାଶେ ଅମ୍ଭେମାନଙ୍କ ଶରୀର ମଧ୍ୟରେ ଗୋଟିଏ ସ୍ୱାଭାବିକ ଶକ୍ତି ନିହିତ ଅଛି । ମାଦକଦ୍ରବ୍ୟ ବ୍ୟବହାରରେ ସେହି ଶକ୍ତି ହ୍ରାସ ହୁଏ, ସୁତରାଂ ମଦ୍ୟପାୟୀମାନେ ସହଜରେ ଏହି ସବୁ ରୋଗରେ ଆକ୍ରାନ୍ତ ହୋଇଥାନ୍ତି ।

ସୁରାର ଅନିଷ୍ଟକାରିତା ସମ୍ବନ୍ଧରେ ଉପରେ ଯାହା ଉଲ୍ଲେଖ କରାଗଲା, ଅଫିମ, ଗଞ୍ଜେଇ ପ୍ରଭୃତି ସମ୍ବନ୍ଧରେ ସୁଦ୍ଧା ତାହା ହିଁ ପ୍ରଯୋଜ୍ୟ ।"

"ଉପରୋକ୍ତ କାରଣ ଏବଂ ଭାରତବର୍ଷର ବିଭିନ୍ନ ଜାତିର ଧର୍ମଶାସ୍ତ୍ର ଓ ସାମାଜିକ ବିଧିବ୍ୟବସ୍ଥା, ମାଦକଦ୍ରବ୍ୟ ବର୍ଜନର ସମ୍ପୂର୍ଣ୍ଣ ଅନୁକୂଳ ଜାଣି, ଅମ୍ଭେମାନେ ଭାରତବାସୀ ଜନସାଧାରଣଙ୍କୁ ସକଳପ୍ରକାର ମାଦକ ଦ୍ରବ୍ୟର ବ୍ୟବହାରରୁ ବିରତ ହେବା ସକାଶେ ସନିର୍ବନ୍ଧ ଅନୁରୋଧ କରୁଅଛୁ ।"

## ଅହିଫେନ-ବିଷନାଶକ ଉପାୟ

ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳ ମଧୁପ" (ଫେବୃଆରି, ମାର୍ଚ୍ଚ, ୧୯୧୬ ଖ୍ରୀଷ୍ଟାବ୍ଦ : ୬ଷ୍ଠ ଭାଗ, ୭ମ, ୮ମ ସଂଖ୍ୟା)

ଅନେକ ସ୍ତ୍ରୀ ଏବଂ ପୁରୁଷ ଅହିଫେନ ସେବନ ଦ୍ୱାରା ଆତ୍ମହତ୍ୟାର ଚେଷ୍ଟାକରି କାଳଗ୍ରାସରେ ପତିତ ହୋଇଥାନ୍ତି । ସହର ସ୍ଥାନମାନଙ୍କରେ ଅହିଫେନ ସେବନଦ୍ୱାରା କେହି ଆତ୍ମହତ୍ୟାର ଚେଷ୍ଟା କରୁଥିବାର ଜଣାଗଲେ ଡାକ୍ତରମାନେ ବିଷନାଶକ ଔଷଧ ପ୍ରୟୋଗ କରି ତାହାର ଜୀବନ ରକ୍ଷା କରିଥାନ୍ତି । ମୋଫସଲରେ ଡାକ୍ତରର ଅଭାବ ହେତୁ କେହି ଆତ୍ମହତ୍ୟା ନିମନ୍ତେ ଅହିଫେନ ସେବନ କରିବାର ଜଣାପଡ଼ିଲେ ମଧ୍ୟ

ତାହାର ଜୀବନ ରକ୍ଷାର ଉପାୟ ନାହିଁ । ବଙ୍ଗଦେଶର ଶ୍ରୀଯୁକ୍ତ ଅମୃତଲାଲ ସର୍ବାଧିକାରୀ ତାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁଙ୍କ ନିକଟରୁ ଅଫିମ-ବିଷନାଶକ ଔଷଧର ବିଷୟ ଅବଗତ ହୋଇ ସାଧାରଣରେ ପ୍ରକାଶ କରିଅଛନ୍ତି । ଉକ୍ତ ବିବରଣୀର ସାରାଂଶ ନିମ୍ନରେ ପ୍ରକାଶ କରାଯାଉଅଛି ।

ହେଙ୍ଗୁ, ଅଫିମର ବିଷକ୍ରିୟା ନଷ୍ଟ କରିବାକୁ ସକ୍ଷମ । କୌଣସି ବ୍ୟକ୍ତି ଅଫିମ ଖାଇଥିବାର ଜଣାପଡ଼ିଲେ ସେ ଯେତେ ଅଫିମ ଖାଇଥିବ, ତେତେ ବା ତହିଁରୁ କିଛି ଅଧିକ ପରିମାଣର ହେଙ୍ଗୁକୁ ଶିଳରେ ବାଟି ଦୁଧରେ, ଦୁଧ ନଥିଲେ ଜଳରେ ଗୋଳି ପିଆଇଲେ ରୋଗୀ ସୁସ୍ଥ ହେବ । ଯଦି ରୋଗୀର ଔଷଧ ସେବନ କରିବାର ଶକ୍ତି ନଥିବ ତାହାହେଲେ ତାହାର ବ୍ରହ୍ମତାଳୁ କ୍ଷୌରକରାଇ ତହିଁରେ ବଟା-ହେଙ୍ଗୁ ଲେପନ କରିବ ଏବଂ ନାଭିର ଚତୁର୍ଦ୍ଦିଗରେ ମଧ୍ୟ ଉକ୍ତ ବଟା ହେଙ୍ଗୁ ବୋଳିବ । ରୋଗୀ ନିଦ୍ରିତ ନ ହେବା ପ୍ରତି ସାବଧାନତାର ସହିତ ଚେଷ୍ଟା କରିବ । ହେଙ୍ଗୁ ସେବନଦ୍ୱାରା ରୋଗୀର ବିଶେଷ କିଛି ଯନ୍ତ୍ରଣା ହେବାର ଆଶଙ୍କା ନାହିଁ । ପାଶ୍ଚାତ୍ୟ-ଚିକିତ୍ସକମାନଙ୍କ ମତରେ ହେଙ୍ଗୁ ଆକ୍ଷେପ ନିବାରକ, ଉତ୍ତେଜକ ଏବଂ ବାୟୁନାଶକ । ଆୟୁର୍ବେଦ ଶାସ୍ତ୍ରରେ ହେଙ୍ଗୁ ବାୟୁନାଶକ ଏବଂ ଉତ୍ତେଜକ ବୋଲି ଉଲ୍ଲେଖ ଅଛି । ଅହିଫେନ ଦ୍ୱାରା ବିଷାକ୍ତ ରୋଗୀର ଶରୀର ମଧ୍ୟରେ ଏହିସବୁ ଉପସର୍ଗଗୁଡ଼ିକ ଆବିର୍ଭୂତ ହୋଇ ତାହାର ଜୀବନଶକ୍ତି ନଷ୍ଟ କରିଦିଏ । ଏପରିସ୍ଥଳେ ହେଙ୍ଗୁ ବିଶେଷ ଉପକାରୀ ହେବ, ସନ୍ଦେହ ନାହିଁ ।

ରୋଗୀ ଉକ୍ତ ଔଷଧ ସେବନ କରିବାକୁ ଅସମର୍ଥ ହେଲେ ତାହା ପିଚକାରୀ ଦ୍ୱାରା ଗୁହ୍ୟ ଦ୍ୱାରରେ ପ୍ରବେଶ କରାଇଦେଲେ ଔଷଧ ସେବନ କରିବା ତୁଲ୍ୟ ଫଳ ଲାଭ ହୁଏ । ଏତଦ୍ଭିନ୍ନ ବେକ ମୂଳରେ ଏବଂ ମେରୁହାଡ଼ର ମଧ୍ୟସ୍ଥଳରେ ହେଙ୍ଗୁ ବାଟି ପ୍ରଲେପ ଦେଲେ ବିଶେଷ ଉପକାର ହୁଏ । ରୋଗୀର ସେବାକାରୀମାନଙ୍କର ପ୍ରଧାନତମ କର୍ତ୍ତବ୍ୟ ରୋଗୀକୁ ସଳଖ ଭାବରେ ବସାଇ ରଖିବା ଏବଂ ନିଦ୍ରାଭିଭୂତ ହେବାକୁ ନ ଦେବା, ପୁଣି ରୋଗୀକୁ ବିଶେଷ ଟଣା ଓଟରା ନ କରିବା ।

ଯଦି ପ୍ରୟୋଜନବେଳେ ହେଙ୍ଗୁ ନମିଳେ ତେବେ ଗୋଟାଏ କଦଳୀ ଗଛରେ ବକ୍ରଭାବରେ ଗୋଟାଏ ନଳ ପ୍ରବେଶ କରାଇ ଗୋଟାଏ ନୂତନ ହାଣ୍ଡି ବା ଶରା, ତହାର ଥିଲେ (ଧାତୁ ପାତ୍ର ବ୍ୟତୀତ) ଅନ୍ୟ ଯେକୌଣସି ପାତ୍ର ଉକ୍ତ ନଳର ମୁଖ ପାଖରେ ରଖିବ । ଉକ୍ତ ଗଛରୁ ଯେଉଁ ଜଳ ନିଃସୃତ ହେବ, ତହିଁରେ ଅର୍ଦ୍ଧ ପଇସା ମୂଲ୍ୟର ଗୋଲମରିଚ ପକାଇ ବାଟି, ସେହି ଜଳ ରୋଗୀ ଯେତେ ପାନକରିପାରେ ପିଆଇବ । ତାହାହେଲେ ରୋଗୀ ଭଲ ହୋଇଯିବ । ନିଶାଗ୍ରସ୍ତ ୧୦।୧୨ ଘଣ୍ଟା ଅତିବାହିତ ହେଲା ଉତ୍ତାରୁ ରୋଗୀକୁ ଚନ୍ଦ୍ରା (ତନ୍ଦ) ବା ଅମ୍ଳିକ ତୋରାଣୀ ଅଳ୍ପ ଦିଆଯାଇପାରେ ।

ଏହାଭିନ୍ନ ହେଙ୍ଗୁର ଆଉ ଅନେକ ଗୁଣ ଅଛି । ଅଗ୍ନି ଦଗ୍ଧ ସ୍ଥାନରେ ହେଙ୍ଗୁ ବାଟି ଲେପ ଦେଲେ କୌଣସି ଜ୍ୱାଳା ଯନ୍ତ୍ରଣା ହୁଏନାହିଁ । ଯକୃତ ଏବଂ ପ୍ଲୀହା ରୋଗରେ ଆକ୍ରାନ୍ତ ରୋଗୀମାନେ ପ୍ରତ୍ୟହ ଏକଧାନ ଓଜନର ହେଙ୍ଗୁ ସେବନ କଲେ ପ୍ଲୀହା ଏବଂ ଯକୃତ ଭଲ ହୋଇଥାଏ ।

## ହାଇମାରିବାର ଉପକାରିତା

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳ ମଧୁପ", ଅପ୍ରେଲ, ୧୯୧୬ ୬ଷ୍ଠ ଭାଗ, ୯ମ ସଂଖ୍ୟାରୁ )

ବିଲାତି ଭଦ୍ରତା ଅନୁସାରେ ଭଦ୍ରବ୍ୟକ୍ତିଙ୍କ ସମକ୍ଷରେ ହାଇ ମାରିବା ଶିଷ୍ଟାଚାର ବିରୁଦ୍ଧ । କିନ୍ତୁ ବିଳାତି ଚିକିତ୍ସକମାନଙ୍କ ମତରେ ହାଇମାରିବା ସ୍ୱାସ୍ଥ୍ୟପକ୍ଷରେ ବିଶେଷ ଉପକାରୀ । ସେମାନେ କହନ୍ତି, ହାଇମାରିବାଦ୍ୱାରା ଫୁସ୍ ଫୁସ୍‌ର ବାୟୁ ଚଳାଚଳ ପକ୍ଷରେ ବିଶେଷ ସୁବିଧା ହୁଏ । ସାଧାରଣତଃ ଶ୍ୱାସ ପ୍ରଶ୍ୱାସ କ୍ରିୟା ଦ୍ୱାରା ଫୁସ୍‌ଫୁସ୍ ସମ୍ପୂର୍ଣ୍ଣରୂପେ ବାୟୁପୂର୍ଣ୍ଣ ବା ତାହାର ଆଭ୍ୟନ୍ତରସ୍ଥ ବାୟୁ ସମ୍ପୂର୍ଣ୍ଣରୂପେ ନିଷ୍କାସିତ ହୋଇପାରେ ନାହିଁ । ସକଳ ସମୟରେ କେତେକ ପରିମାଣରେ ବାୟୁ ଫୁସ୍ ଫୁସ୍‌ରେ ଆବଦ୍ଧ ଥାଏ; କାଳକ୍ରମରେ ତାହା ଦୂଷିତ ହୋଇ ରକ୍ତକୁ ଦୂଷିତ କରେ । ଉକ୍ତ ରକ୍ତଦ୍ୱାରା ସ୍ନାୟୁ କେନ୍ଦ୍ର ବିଚଳିତ ହୁଏ । ସ୍ନାୟୁମଣ୍ଡଳ ବିଚଳିତ ହେଲେ ଏହାର ଅଂଶବିଶେଷ ସଲ ସଲ ଲାଗେ । ତାହାର ଫଳ ସ୍ୱରୂପ ଲୋକମାନେ ହାଇମାରିଥାନ୍ତି । ହାଇମାରିଲେ ଫୁସ୍‌ଫୁସ୍ ଯନ୍ତ୍ର ସମ୍ପୂର୍ଣ୍ଣରୂପେ ବିସ୍ତୃତ ହୋଇ ତନ୍ମଧ୍ୟସ୍ଥ ଦୂଷିତ ବାୟୁରାଶି ନିଃଶେଷ ରୂପେ ବାହାର କରିଦେଇ ପୁନଶ୍ଚ ବିଶୁଦ୍ଧ ବାୟୁ ପୂର୍ଣ୍ଣ କରେ । ହାଇମାରିବାର ଆଉ ଗୋଟିଏ ଉପକାରିତା ଅଛି । ହାଇମାରିବା ସମୟରେ ମସ୍ତକ ମଧ୍ୟରେ ଫଟ୍‌ଫଟ୍ ଶବ୍ଦ ଶୁଣାଯାଏ । ଶ୍ରବଣ ଯନ୍ତ୍ରଠାରୁ ଗଳାର ପଶ୍ଚାଦ୍ଦେଶ ପର୍ଯ୍ୟନ୍ତ ଗୋଟିଏ ସୂକ୍ଷ୍ମନଳୀ ଅଛି, ସେହି ନଳୀ ଉପରେ ଚାପ ପଡ଼ିଲେ ଶ୍ରବଣ ଶକ୍ତି ମଧ୍ୟ ଊଣା ପଡ଼ିଯାଏ । ହାଇମାରିବାବେଳେ ଏହି ନଳୀଟି ବିସ୍ତୃତ ନ ଉନ୍ମୁକ୍ତ ହୋଇଯାଏ ।

# କୋଷ୍ଠ-ବଦ୍ଧତା

(ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ "ଉତ୍କଳମଧୁପ", ଜୁନ, ଜୁଲାଇ, ୧୯୧୬ ଷଷ୍ଠଭାଗ, ୧୧ଶ ଓ ୧୨ଶ ସଂଖ୍ୟାରୁ)

କୋଷ୍ଠବଦ୍ଧତାର ରୋଗୀ ଅନେକ । ଯେଉଁମାନେ କ୍ରମାଗତ ଘର ମଧ୍ୟରେ ବସି ରହନ୍ତି, ପରିଶ୍ରମ କରନ୍ତି ନାହିଁ ଏବଂ ବାହ୍ୟବାୟୁରେ ଭ୍ରମଣ କରନ୍ତି ନାହିଁ, ସେହିମାନେ ଏହି କଷ୍ଟପ୍ରଦ ରୋଗରେ ଆକ୍ରାନ୍ତ ହୁଅନ୍ତି । ସେହି ରୋଗୀମାନଙ୍କ ନିକଟରେ ଇଚ୍ଛାଭେଦୀ ବଟିକାର ଆଦର ଅତ୍ୟଧିକ । ସୁନାମୁଖି ପତ୍ରର ଗୁଣ୍ଡା ଏକ ତୋଳା ମିଶ୍ରିଚୂର୍ଣ୍ଣ ଏକତୋଳା, ଦ୍ରାକ୍ଷା ବା କିସ୍‌ମିସ୍ ୧କତୋଳା ପରିମାଣରେ ଆଣି ବାଟି ଉତ୍ତମ ରୂପେ ମିଶାଇ କାଦୁଅପରି ହେଲାରୁ କୋଳିମଞ୍ଜି ଆକାରରେ ବଟିକା ପ୍ରସ୍ତୁତ କରିବ । ରାତ୍ରରେ ଆହାରାନ୍ତେ ଶୟନ କରିବା ସମୟରେ ଏକ ବା ଦୁଇଗୋଟି ବଟିକା ଶୀତଳ ଜଳ ସହିତ ସେବନ କଲେ ପ୍ରାତଃକାଳରେ ଦାସ୍ତ ପରିଷ୍କାର ହୁଏ ।

ଜଣେ ଦୁର୍ଦ୍ଦମ୍ୟ କୋଷ୍ଠବଦ୍ଧ ରୋଗାକ୍ରାନ୍ତ ଭଦ୍ରଲୋକ ପ୍ରକାଶ କରିଅଛନ୍ତି ଯେ ଗୋଟାଏ କଞ୍ଚା-କଣି-ବେଲ ଆଣି ତାହାର ଖୋଳପା ଛଡ଼ାଇଦେଇ ମଧ୍ୟଗତ ମଞ୍ଜି ପ୍ରଭୃତିକୁ ଜଳରେ ସିଦ୍ଧ କରିବ । ତତ୍ପରେ ଚକଟି ମଞ୍ଜିଗୁଡ଼ିକ ବାହାର କରିଦେଇ ପକାଇ ଦେବ । ଅବଶିଷ୍ଟ ଯାହା ରହିବ, ତହିଁରେ ଅଳ୍ପ ଚିନି ମିଶାଇ ଭାତସଙ୍ଗେ ଆହାରର ପ୍ରଥମେ ଖାଇଲେ ଅତିସୁନ୍ଦର କୋଷ୍ଠ-ପରିଷ୍କାର ହୁଏ । ସେ ଏହିପରି କରି ଆଶାତୀତ ସୁଫଳ ପାଇଥିଲେ । ସେ ବେଲର ଏକଫାଳ ଖାଉଥିଲେ । ସେ କହନ୍ତି ଜୋଲାପ ପ୍ରଭୃତି ଅର୍ଥାତ୍ ବିରେଚନ କରାଇବା ଅପେକ୍ଷା ଏହି ଉପାୟ ଅତ୍ୟନ୍ତ ଭଲ ।

# ଗୋରସ ତତ୍ତ୍ୱ

ଦୁଧ ଯେତେବେଳେ ମାତୃସ୍ତନରୁ ଦୋହିତ ହୋଇ କୌଣସି ପ୍ରକାର ଆଲୋଡ଼ିତ ନ ହୋଇ ସ୍ଥିରଥାଏ, ତେତେବେଳେ ତାହା ଉପରେ ଗୋଟିଏ ପାତଳା ସରପରି ପଡ଼ିଥାଏ, ତାହା ସ୍ନେହପଦାର୍ଥ । ତହିଁରେ ଲହୁଣୀ ଓ ଚର୍ବିମିଶ୍ରିତ ଥାଏ । ଦୁଧ ଅମ୍ଳାକ୍ତ ହୋଇ ଦଧିର ଆକାର ଧାରଣ କଲାରୁ ତହିଁରେ ମାଂସର ସମତୁଲ୍ୟ ପଦାର୍ଥ ବିଦ୍ୟମାନ ଥାଏ । ତାହା ତଳେ ଯେଉଁ ଜଳୀୟ ଅଂଶଥାଏ, ତହିଁରେ ଏକ ବିଶେଷ ପ୍ରକାରର ଶର୍କରା ବିଦ୍ୟମାନ ଥାଏ । ତହିଁରେ କେତେକ ଖଣିଜ ପଦାର୍ଥ ମଧ୍ୟ

ମିଶ୍ରିତ ଥାଏ । ଯେଉଁ ଅଂଶ ଅମ୍ଳସ୍ୱାଦଯୁକ୍ତ ଦଧି, ତାହା ଜନ୍ତୁ ଶରୀରରେ ରକ୍ତ ଏବଂ ବିବିଧ ତନ୍ତୁ ଗଠିତ କରେ । ତାହାର ତରଳାଂଶରେ ଥିବା ଖଣିଜ ପଦାର୍ଥ ଦ୍ୱାରା ଅସ୍ଥିସମୂହର ଦୃଢ଼ତା ସମ୍ପାଦିତ ହୁଏ ଏବଂ ଉପରେ ଯେଉଁ ସ୍ନେହ ପଦାର୍ଥ ଥାଏ ତାହାଦ୍ୱାରା ଶରୀରର ତେଜ-ଜୀବନୀ ଶକ୍ତି ବୃଦ୍ଧିପାଏ । ଫଳତଃ ଦୁଧ ପରିପାକ ଯନ୍ତ୍ରର ଅତି ଉପଯୁକ୍ତ ଖାଦ୍ୟ । ଜନ୍ତୁମାନଙ୍କର ଶୈଶବାବସ୍ଥାରେ ଯେତେବେଳେ ସମସ୍ତ ଶାରୀରିକଯନ୍ତ୍ର ପରିପୁଷ୍ଟତା ଲାଭ କରିବାକୁ ପ୍ରୟାସୀ, ସେହି ସମୟରେ ପରିପାକ ଯନ୍ତ୍ର ନିଃସୃତ ପଦାର୍ଥ ଦ୍ୱାରା ଦୁଧ କଠିନ ଖାଦ୍ୟରେ ପରିବର୍ତ୍ତିତ ହୋଇ ଶରୀରର ପୁଷ୍ଟି ସାଧିତ କରେ । ଦୁଧ ଅତି ସୁଖାଦ୍ୟ ଏବଂ ଈଶ୍ୱରଙ୍କର ଅପୂର୍ବ ସୃଷ୍ଟି ।

## ଅଜୀର୍ଣ୍ଣ ରୋଗର କାରଣ

( ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ 'ଉତ୍କଳ ମଧୁପ', ଜୁନ, ୧୯୧୮, ୮ମ ଭାଗ, ୪ର୍ଥ ସଂଖ୍ୟାରୁ )

ଅଫିସର୍, କିରାଣି ଓ ଯେଉଁମାନେ ଅଧିକକାଳ ଟେବୁଲ ଉପରେ ଲେଖିବା କାର୍ଯ୍ୟ କରନ୍ତି, ସେମାନଙ୍କ ମଧ୍ୟରେ ଅଜୀର୍ଣ୍ଣ ରୋଗର ଆଧିକ୍ୟ ଦେଖାଯାଏ । ଟେବୁଲରେ ଲେଖିବା ପ୍ରଣାଳୀ ଆଦୌ ଶରୀର ବିଜ୍ଞାନର ଅନୁମୋଦିତ ନୁହେଁ । ଲେଖିବା ବେଳେ ଟେବୁଲ ଉପରେ ଭରଦେଇ ଶରୀର ନୁଆଁଇ ରଖିବା ହେତୁ ମେରୁଦଣ୍ଡ ବକ୍ର ହୋଇଥାଏ । ବାହୁର ଅସ୍ଥିମଧ୍ୟ ତଳକୁ ପଡ଼ିଯାଏ । ଏତଦ୍ୱାରା ପାକସ୍ଥଳୀ ଓ ଅନ୍ତ୍ରରେ ଚାପ ପଡ଼େ, ଏବଂ ସେସବୁ ନିଜ ସ୍ଥାନରୁ ଘୁଞ୍ଚିଯାନ୍ତି । ହୃଦୟ ପୀଡ଼ା, ଯକୃତ୍ ଏବଂ ଅନ୍ୟାନ୍ୟ ଯନ୍ତ୍ରାଦି ମଧ୍ୟ ଚାପ ପ୍ରାପ୍ତ ହୁଅନ୍ତି । ଗଳଦେଶ ସଙ୍କୁଚିତ ହେବାରୁ ରକ୍ତ ଚଳାଚଳରେ ବ୍ୟାଘାତ ଜନ୍ମେ । ଫଳତଃ କୌଣସି ଯନ୍ତ୍ରର କ୍ରିୟା ସୁସମ୍ପନ୍ନ ହୁଏ ନାହିଁ; ଏହି ସବୁ କାରଣରୁ ଦୁଃସାଧ୍ୟ ଅଜୀର୍ଣ୍ଣ ରୋଗ ଜନ୍ମିଥାଏ ।

———

# ପାପର ପ୍ରାୟଶ୍ଚିତ୍ତ

**ଶ୍ରୀ ନୀଳମଣି ବିଦ୍ୟାରତ୍ନ**

(ଉତ୍କଳ ସାହିତ୍ୟ-୧ମ ଖଣ୍ଡ-୪ର୍ଥ ସଂଖ୍ୟା, ବୈଶାଖ-୧୩୦୪)

ପାପପୁଣ୍ୟବୋଧ ସ୍ୱାଭାବିକ ଓ ସର୍ବଜନୀନ । ଏହା ହେଲେ ସୁଦ୍ଧା ପାପ ଓ ପୁଣ୍ୟର ସ୍ୱରୂପ ସମ୍ବନ୍ଧରେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ତର ବିବାଦ ଲାଗିଅଛି । ହିନ୍ଦୁମାନେ ଗୋହତ୍ୟାକୁ ପାପ ମନେ କରନ୍ତି । କିନ୍ତୁ ମୁସଲମାନମାନେ ପୁଣ୍ୟାର୍ଜନ ସକାଶେ ଅବଲୀଳାକ୍ରମେ ଗୋବଧ କରିଥାନ୍ତି । ଫଳତଃ ଜଣେ ଯାହାକୁ ପୁଣ୍ୟକାର୍ଯ୍ୟ ମନେକରୁଅଛି, ଅନ୍ୟ ଜଣର ବିବେଚନାରେ ତାହା ପାପ । କେତେକ କାର୍ଯ୍ୟର ଫଳାଫଳ ସମ୍ବନ୍ଧରେ ଏହିପରି ମତଭେଦ ଥିଲେ ସୁଦ୍ଧା ସର୍ବସମ୍ପ୍ରଦାୟସମ୍ମତ କେତେଗୁଡ଼ିଏ ପାପ ଓ ପୁଣ୍ୟକାର୍ଯ୍ୟ ଅଛି । ଦୟା, ପରୋପକାର, ଇନ୍ଦ୍ରିୟସଂଯମ ପ୍ରଭୃତି ପୁଣ୍ୟକାର୍ଯ୍ୟ ମଧ୍ୟରେ ଓ ନିଷ୍ଠୁରତା, ପରୋପକାର ବ୍ୟତିକ୍ରମର ପ୍ରଭୃତି ପାପକାର୍ଯ୍ୟ ମଧ୍ୟରେ ପରିଗଣିତ । ସୁତରାଂ ପାପ ଓ ପୁଣ୍ୟର ସ୍ୱରୂପ ସମ୍ବନ୍ଧୀୟ ଆଲୋଚନାରୁ କ୍ଷାନ୍ତ ହୋଇ ପାପର ପ୍ରକୃତ ପ୍ରାୟଶ୍ଚିତ୍ତ କିଅଣ ଏ ବିଷୟରେ କିଞ୍ଚିତ ଆଲୋଚନା କରିବା ସକାଶେ ପ୍ରବୃତ୍ତ ହେଉଅଛୁଁ ।

'ପ୍ରାୟଶ୍ଚିତ୍ତ' ଶବ୍ଦର ଅର୍ଥ 'ଯାହା ମନକୁ ନିର୍ମଳ କରେ ।' 'ପ୍ରାୟଶ୍ଚିତ୍ତ'ର ଇଂରେଜୀ ପ୍ରତିଶବ୍ଦ Atonement, ଏହି ଶବ୍ଦର ବାକ୍ୟାର୍ଥ ଏହି ଯେ Atone-ment ଏକୀଭୂତ ହେବା, ଅର୍ଥାତ୍ ପାପଲିପ୍ତ ହୋଇ ପବିତ୍ର ସ୍ୱରୂପ ପରମେଶ୍ୱରଙ୍କଠାରୁ ବିଚ୍ୟୁତ ହୋଇ ଦୂରରେ ପଡ଼ିଥିଲି, ବିଚ୍ଛିନ୍ନ ହୋଇଥିଲି, ପୁନଶ୍ଚ ମିଳିତ ହେଲି, ପ୍ରାୟଶ୍ଚିତ୍ତ ସେହି ଦୂରତ୍ୱ ବିନାଶ କରି ଏକୀଭୂତ ବା ମିଳିତ କରିଦେଲା । ପ୍ରାୟଶ୍ଚିତ୍ତ ଶବ୍ଦର ସ୍ଥୂଳ ଅର୍ଥ ଏହି ଯେ ସେ ଈଶ୍ୱରଙ୍କ ସହିତ ପୁନର୍ମିଳନ ସ୍ଥାପନ କରିଦିଏ । ଖ୍ରୀଷ୍ଟାନ୍ ଧର୍ମଶାସ୍ତ୍ର ବାଇବେଲ୍‌ରେ ଏବଂ ଅନ୍ୟାନ୍ୟ ସମ୍ପ୍ରଦାୟର ଧର୍ମଶାସ୍ତ୍ରମାନଙ୍କରେ ଲିଖିତ ଅଛି ଯେ "ପବିତ୍ରଚିତ୍ତ ବ୍ୟକ୍ତିମାନେ ଧନ୍ୟ, ଯେହେତୁ ସେମାନେ ଈଶ୍ୱରଙ୍କର ଦର୍ଶନ ଲାଭ କରିବେ—ଈଶ୍ୱରଙ୍କ ସହିତ ମିଳିତ ହେବେ ।" କଥା ପ୍ରକୃତ, ଚିତ୍ତଶୁଦ୍ଧି ନ ହେଲେ ଈଶ୍ୱରଦର୍ଶନ-

ଈଶ୍ୱରଲାଭ ଅସମ୍ଭବ । ସମସ୍ତ ଦେଶର ସକଳ ସମ୍ପ୍ରଦାୟର ଧାର୍ମିକମାନେ ଏକଥା ଏକ ବାକ୍ୟରେ ସ୍ୱୀକାର କରନ୍ତି ।

ସୁତରାଂ ପ୍ରାୟଶ୍ଚିତ୍ତର କାର୍ଯ୍ୟକାରିତା ବିଷୟରେ ସନ୍ଦେହ କରିବାର କିଛିମାତ୍ର କାରଣ ନାହିଁ । ବର୍ତ୍ତମାନ ଜିଜ୍ଞାସା, ପାପର ପ୍ରକୃତ ପ୍ରାୟଶ୍ଚିତ୍ତ କଅଣ ?

"ପାପର ପ୍ରକୃତ ପ୍ରାୟଶ୍ଚିତ୍ତ କଅଣ" ଏହା ନୂତନ ପ୍ରଶ୍ନ ନୁହେଁ । ସକଳ ଦେଶର, ସକଳ ସମୟର ଏବଂ ସକଳ ସମ୍ପ୍ରଦାୟର ମୁମୁକ୍ଷୁମାନେ ପ୍ରଶ୍ନ କରିଅଛନ୍ତି—"ପାପମୁକ୍ତ ହେବାର ପ୍ରକୃତ ଉପାୟ କ'ଣ ? ପ୍ରକୃତ ପ୍ରାୟଶ୍ଚିତ୍ତ କ'ଣ ? ଏହାର ସଦୁତ୍ତର ଲାଭ ସକାଶେ ସମସ୍ତେ ବ୍ୟାକୁଳ, ପାପବୋଧ ଯାହାର ଯେତେ ପ୍ରବଳ, ଉତ୍ତରଲାଭର ବ୍ୟାକୁଳତା ତାହାର ସେତେ ବେଶି । ଆମ୍ଭେମାନେ ପାପର କୀଟ, ଆମ୍ଭମାନଙ୍କର ପାପବୋଧ ନାହିଁ କହିଲେ ଚଳେ । ତଥାପି ଆମ୍ଭମାନଙ୍କର ପାପକଳୁଷିତ ମନରେ ସମୟ ସମୟରେ ସେହି ପ୍ରଶ୍ନର ଉଦୟ ହୋଇଥାଏ ଏବଂ ସମଧର୍ମାକ୍ରାନ୍ତ ଅନ୍ୟାନ୍ୟଙ୍କ ମୁଖରୁ ସେହିପ୍ରକାରର ପ୍ରଶ୍ନ ଶୁଣିବାକୁ ପାଉଁ । ସୁତରାଂ ଏହି ସର୍ବଜନୀନ ପ୍ରଶ୍ନର ସଦୁତ୍ତର ଲାଭ ସକାଶେ କିଞ୍ଚିତ ଆଲୋଚନା, ଅନୁସନ୍ଧାନ କରି ଦେଖିବା ଅଯୌକ୍ତିକ ନୁହେ, ବରଂ ତାହା ମାନବର ଅବଶ୍ୟ କର୍ତ୍ତବ୍ୟ ।

ପ୍ରାୟ ସକଳ ସମ୍ପ୍ରଦାୟର ଲୋକମାନଙ୍କ ମତରେ ପାପପୁଣ୍ୟର ଦଣ୍ଡ ଓ ପୁରସ୍କାର ଭୋଗ କରିବା ସକାଶେ ସ୍ୱର୍ଗ ଓ ନରକ ନାମକ ବିଶେଷ ନିର୍ଦ୍ଦିଷ୍ଟ ସ୍ଥାନ ଅଛି । ସୁତରାଂ ସେମାନଙ୍କ ମତାନୁସାରେ ଯେ ପୁଣ୍ୟକାର୍ଯ୍ୟ କଲା ସେ ସ୍ୱର୍ଗରେ ବାସ କରି ଅନନ୍ତ ସୁଖ ଭୋଗ କରିବ, ଯେ ପାପକାର୍ଯ୍ୟ କଲା ସେ ନରକରେ ବାସ କରି ଅନନ୍ତ ଯନ୍ତ୍ରଣା ଭୋଗ କରିବ । ଲୋକମାନଙ୍କର ସ୍ୱର୍ଗ-ନରକ ସମ୍ବନ୍ଧୀୟ ଏହି ବିଶ୍ୱାସ କେତେଦୂର ସତ୍ୟପୂର୍ଣ୍ଣ-ଅଭ୍ରାନ୍ତ, ବର୍ତ୍ତମାନ ଆଲୋଚନା କରିବାର ପ୍ରୟୋଜନ ନାହିଁ । ସେମାନଙ୍କର ଉଲ୍ଲିଖିତ ବିଶ୍ୱାସ ଅଭ୍ରାନ୍ତ ବୋଲି ସ୍ୱୀକାର କଲେ ସୁଦ୍ଧା ମୁମୁକ୍ଷୁମାନଙ୍କର ଉପରୋକ୍ତ ପ୍ରଶ୍ନ ଅଗ୍ରାହ୍ୟ କରାଯାଇ ନ ପାରେ । ଯେଉଁମାନେ ପାପ କଲେ—ଅଥଚ ପାପମୁକ୍ତ ହେବାର ଚେଷ୍ଟା କଲେ ନାହିଁ ସେମାନେ ନରକରେ ନିପତିତ ହେବେ, ହେଉନ୍ତୁ । କିନ୍ତୁ ଯେଉଁମାନେ କଳୁଷିତ ଚିତ୍ତକୁ ପବିତ୍ର କରିବା ସକାଶେ—ନିର୍ମଳାତ୍ମା ହେବା ସକାଶେ—ପାପର ପ୍ରକୃତ ପ୍ରାୟଶ୍ଚିତ୍ତ କରିବା ସକାଶେ ଆକାଙ୍କ୍ଷିତ, ସେମାନଙ୍କର ଆକାଙ୍କ୍ଷା ଅବଶ୍ୟ ପୂର୍ଣ୍ଣ ହେବ । ପୂର୍ଣ୍ଣ ହେବ ବୋଲି ପ୍ରଶ୍ନ କରୁଅଛୁ ଏହି ଆକାଙ୍କ୍ଷାପୂର୍ତ୍ତିର ଉପାୟ କଅଣ ?

କେହି କେହି କହିପାରନ୍ତି "ପାପକାର୍ଯ୍ୟ କଲେ ତନ୍ନିମିତ୍ତ ଗୁରୁତର ଶାସ୍ତି ଅବଶ୍ୟ ଭୋଗ କରିବାକୁ ହେବ । ଏତଦ୍‌ବ୍ୟତୀତ ପାପମୁକ୍ତ ହେବାର କିଛିମାତ୍ର ଉପାୟ ନାହିଁ ।" କିନ୍ତୁ ସେମାନଙ୍କର ଏ କଥାରେ ଆମ୍ଭମାନଙ୍କର ମନ ମାନିବ ନାହିଁ । ସ୍ୱୀକାର କଲୁଁ ପାପ କଲେ ଗୁରୁତର ଶାସ୍ତି ଭୋଗ କରିବାକୁ ହେବ, ନରକରେ ନିପତିତ ହେବାକୁ ହେବ, କିନ୍ତୁ—

"ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଆଚରଇ ।"

ଏହି ନୀତିବାକ୍ୟ ଅସ୍ୱୀକାର କରିପାରିବୁ ନାହିଁ । ଇହଲୋକରେ ମାନବମାନେ ଦୁଷ୍ୟକାର୍ଯ୍ୟ କରି ସ୍ୱାର୍ଥାନ୍ଧମାନବ ନିକଟରେ କ୍ଷମାଲାଭ କରୁଥିବା ସ୍ଥଳେ, ପାପୀ ଦୟାମୟ ପରମପିତାଙ୍କ ନିକଟରେ ପ୍ରାର୍ଥୀ ହୋଇ କ୍ଷମାଲାଭ କରିପାରିବ ନାହିଁ—ପାପମୁକ୍ତ ହୋଇ ପାରିବ ନାହିଁ । ଏହା ନିତାନ୍ତ ଅଯୌକ୍ତିକ ଓ ଅଶ୍ରଦ୍ଧେୟ କଥା । ଯଦ୍ୟପି ସେମାନଙ୍କର କଥା ସତ୍ୟରୂପେ ଗ୍ରହଣ କରାଯାଏ ତେବେ ସ୍ୱୀକାର କରିବାକୁ ହେବ ଈଶ୍ୱରଙ୍କର ପତିତପାବନ ନାମଧାରଣ ନିରର୍ଥକ, କିନ୍ତୁ ଅମ୍ଭେମାନେ ପ୍ରକୃତିରାଜ୍ୟରେ କ୍ଷମାର ଶତସହସ୍ର ଦୃଷ୍ଟାନ୍ତ ଦର୍ଶନ କରୁଥିବା ସ୍ଥଳେ ସେମାନଙ୍କ ସହିତ ଏକମତ ହୋଇ ନ ପାରୁଁ । ପାପର ଶାସ୍ତି-ଭୋଗ ବ୍ୟତୀତ, * ପାପମୁକ୍ତିର ସେ କିଛି ପ୍ରକୃଷ୍ଟ ଉପାୟ ଅଛି । ଏ ବିଷୟରେ ଅମ୍ଭମାନଙ୍କର କିଞ୍ଚିନ୍ମାତ୍ର ସନ୍ଦେହ ନାହିଁ । ତେବେ ସେ ଉପାୟ କଅଣ ? ସେ ଉପାୟ ଅଉ କିଛି ନୁହେଁ—ପାପର ଏକମାତ୍ର ପ୍ରକୃତ ପ୍ରାୟଶ୍ଚିତ୍ତ ଅନୁତାପ । ଏହା ଆମ୍ଭମାନଙ୍କର ମନଗଢ଼ା କଥା ନୁହେ, ମହର୍ଷି ମନୁ କହିଯାଇଅଛନ୍ତି—

"କୃତ୍ୱା ପାପଂହି ସନ୍ତପ୍ୟ ତସ୍ମାତ୍ ପାପାତ୍ ପ୍ରମୁଚ୍ୟତେ
ନୈବଂ କୁର୍ଯ୍ୟାଂ ପୁନରିତି ନିବୃତ୍ତ୍ୟା ପୂୟତେ ତୁ ସଃ ।"

ଏହାର ଅର୍ଥ ଏହି ଯେ "ପାପ କରି ତନ୍ନିମିତ୍ତ ସନ୍ତାପ କଲେ ସେହି ପାପରୁ ସେ ମୁକ୍ତ ହୁଏ । ଏପରି କର୍ମ ଆଉ କରିବି ନାହିଁ, ଏହି ପ୍ରତିଜ୍ଞା କରି ତହିଁରୁ ନିବୃତ୍ତ ହେଲେ ସେ ପବିତ୍ର ହୁଏ ।" ଆମ୍ଭମାନଙ୍କ ବିବେଚନାରେ ମହର୍ଷି-ମନୁଙ୍କର ଏହି ପ୍ରାୟଶ୍ଚିତ୍ତ ଅବସ୍ଥା ଅତୀବ ସତ୍ୟପୂର୍ଣ୍ଣ ଏବଂ ସକଳଦେଶୀୟ ସକଳ ସମ୍ପ୍ରଦାୟର ମୁମୁକ୍ଷୁମାନଙ୍କ ମୁକ୍ତିଲାଭ ପକ୍ଷରେ ଅବ୍ୟର୍ଥ ମହୌଷଧ ସ୍ୱରୂପ ।

"ପାପର ପ୍ରକୃତ ପ୍ରାୟଶ୍ଚିତ୍ତ ଅନୁତାପ ।" ଅନେକେ ଏହି ସିଦ୍ଧାନ୍ତ ଅସ୍ୱୀକାର କରନ୍ତି । ସେମାନେ କହନ୍ତି, "ଅନୁତାପ ଯେବେ ପାପମୁକ୍ତିର ଉପାୟ

ତେବେ ଆମ୍ଭମାନଙ୍କର ପାପକାର୍ଯ୍ୟରୁ ବିରତ ହେବାର ପ୍ରୟୋଜନ ନାହିଁ । ପାପାଚରଣ ପରେ ଥରେ ଥରେ ଅନୁତାପ କଲେ ହେଲା ।" ଯେଉଁମାନେ ଅନୁତାପକୁ ସହଜବୋଧ କରନ୍ତି ସେମାନଙ୍କ ନିକଟରେ ଉପରୋକ୍ତ ଆପତ୍ତି ଯୁକ୍ତିଯୁକ୍ତ ଏବଂ ସାରବାନ ବିବେଚିତ ହୋଇପାରେ, କିନ୍ତୁ ଯେଉଁମାନେ ଅନୁତାପକୁ ଚିହ୍ନି ଅଛନ୍ତି, ତହିଁର ଭୀଷଣତା, ତୀବ୍ରତା ଉପଲବ୍ଧି କରିଅଛନ୍ତି, ସେମାନଙ୍କ ନିକଟରେ ଉପରୋକ୍ତ ଆପତ୍ତିର ମୂଲ୍ୟ ଏକ କଡ଼ାରୁ ନ୍ୟୂନ । ସେପରି ବ୍ୟକ୍ତିଙ୍କ ନିକଟରେ ସେହି ଆପତ୍ତି ଯେ ନିତାନ୍ତ ଅସାର ବିବେଚିତ ହେବ ଏହା କହିବା ବାହୁଲ୍ୟ ମାତ୍ର । ବାସ୍ତବରେ ଅନୁତାପର ପ୍ରଭାବ ସାମାନ୍ୟ ନୁହେଁ, ଅନୁତାପ ଜନିତ ଯନ୍ତ୍ରଣା ସହସ୍ର ବୃଶ୍ଚିକ ଦଂଶନ ଜନିତ ଯନ୍ତ୍ରଣାରୁ ବଳି ଭୟଙ୍କର । ମହାତ୍ମାମାନଙ୍କର ଜୀବନପ୍ରତି ଦୃଷ୍ଟିନିକ୍ଷେପ କଲେ ଏଥିର ସତ୍ୟତା ସମ୍ବନ୍ଧରେ ଶତସହସ୍ର ଦୃଷ୍ଟାନ୍ତ ମିଳିପାରିବ । ଯେ ଲୋକ ଥରେ ସେହି ଅବ୍ୟକ୍ତ ଯନ୍ତ୍ରଣା ଭୋଗ କରିଅଛି, ତାର ପାପପ୍ରବୃତ୍ତିର ପୁନରୁଦ୍ରେକ ହେବା ନିତାନ୍ତ ଅସମ୍ଭବ ।

ବର୍ତ୍ତମାନ କେହି କେହି କହିପାରନ୍ତି, "ଯେବେ ପାପର ପ୍ରକୃତ ପ୍ରାୟଶ୍ଚିତ୍ତ ଅନୁତାପ ଏବଂ ଅନୁତାପର ଯନ୍ତ୍ରଣା ଅତି ଭୟାନକ, ପୁଣି ସେହି ଯନ୍ତ୍ରଣା ଚିରସ୍ଥାୟୀ, ତେବେ ତାଦୃଶ ପ୍ରାୟଶ୍ଚିତ୍ତର ପ୍ରୟୋଜନ ନାହିଁ । 'ନରକ' ନାମକ ଦୁଃଖଭୋଗର ସ୍ଥାନ ବିଶେଷ ଅଛି କି ନା ତହିଁର ସ୍ଥିରତା ନାହିଁ, ଥିଲେ ପାପର ଦଣ୍ଡ ଭୋଗ କରିବୁଁ, ନ ଥିଲେ ନିଷ୍କୃତି ଲାଭ କରିବୁ, କିନ୍ତୁ ଆପାତତଃ ଅନିଶ୍ଚିତ ନରକ ଯନ୍ତ୍ରଣାର ଭୟରେ ପାପର ପ୍ରାୟଶ୍ଚିତ୍ତ କରିବାକୁ ଯାଇ ଚିରଜୀବନ ଅନନ୍ତ ଯନ୍ତ୍ରଣା ଭୋଗ କରିବା କେବେହେଁ ଉଚିତ ନୁହେଁ ।' ଯେଉଁମାନେ ଅନୁତାପ ଜନିତ ଭୀଷଣ ଯନ୍ତ୍ରଣା ଭୟରେ କାତର ହୋଇ ମୂର୍ଖଙ୍କ ପରି ଅସାର ଆପତ୍ତି ଉତ୍ଥାପନ କରନ୍ତି ସେମାନଙ୍କର ସ୍ଥିର ଭାବରେ ବିବେଚନା କରିବା ଉଚିତ ଯେ ମାନବ ଜୀବନର ଉଦ୍ଦେଶ୍ୟ କି ? ଏକମାତ୍ର ଉଦ୍ଦେଶ୍ୟ, ପରମ-ପିତାଙ୍କର ଆଜ୍ଞା ପାଳନ,—ତାଙ୍କର ପ୍ରିୟକାର୍ଯ୍ୟ ସାଧନ । ଉପକାରୀ ବ୍ୟକ୍ତି ନିକଟରେ କୃତଜ୍ଞ ରହିବା ଯେ ଉଚିତ୍ ଏହା ସର୍ବବାଦିସମ୍ମତ ସତ୍ୟ କଥା ।

ଏଥିରେ ଅନ୍ୟଥାଚରଣ କଲେ ମାନବ କୃତଘ୍ନତା ଦୋଷରେ ଲିପ୍ତ ହୁଏ । ଯେଉଁ ପରମପିତା ଯତ୍ନରେ ଆମ୍ଭମାନଙ୍କୁ ରକ୍ଷା କରୁଅଛନ୍ତି, ଯେ ଆମ୍ଭମାନଙ୍କର ପୀଡ଼ା ନିବାରଣ ନିମନ୍ତେ ଔଷଧ, ତୃଷ୍ଣା ନିବାରଣ ନିମନ୍ତେ ଜଳ, ଶୀତ ନିବାରଣ ନିମନ୍ତେ ଉତ୍ତାପ, କ୍ଷୁଧା ନିବାରଣ ନିମନ୍ତେ ଅନ୍ନ ସୃଷ୍ଟି କରିଅଛନ୍ତି, ତାଙ୍କ ନିକଟରେ ଅକୃତଜ୍ଞ ହେବା, ତାଙ୍କର ଅପ୍ରିୟକାର୍ଯ୍ୟ କରିବା କି

ଅମ୍ଭମାନଙ୍କର ଉଚିତ କାର୍ଯ୍ୟ ? କଦାପି ନୁହେଁ । କିନ୍ତୁ ଆମ୍ଭେମାନେ ବିବେକକୁ ସ୍ୱାର୍ଥ ନିକଟରେ ବଳି ଦେଇ ଆପାତ ମଧୁର ବିଷୟାନୁରାଗରେ ମୁଗ୍ଧ ହୋଇ ପରମପିତାଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରି କର୍ତ୍ତବ୍ୟଭ୍ରଷ୍ଟ ହେଉଅଛୁଁ । ଅହୋ ! ଆମ୍ଭେମାନେ କି ବିଷମ ଭ୍ରମରେ ପତିତ ହୋଇଅଛୁଁ । ଆମ୍ଭେମାନେ ଯେବେ ପାପ ପ୍ରତି ଘୃଣା ପ୍ରଦର୍ଶନ ନ କରୁଁ—ପାପମୁକ୍ତ ହେବାର ଚେଷ୍ଟା ନ କରୁଁ, ତେବେ ଅମ୍ଭମାନଙ୍କର ଜୀବନଧାରଣ ବୃଥା । ଆମ୍ଭେମାନେ ପାପର ପ୍ରଲୋଭନରେ ମୁଗ୍ଧ ହୋଇ ଯାହାକୁ ପ୍ରକୃତ ସୁଖ ମନେ କରୁଅଛୁଁ, ତାହା ପ୍ରକୃତ ସୁଖ ନୁହେଁ । ପ୍ରକୃତ ସୁଖର ଦ୍ୱାର ପାପୀମାନଙ୍କ ସକାଶେ ଚିର ରୁଦ୍ଧ । ପ୍ରକୃତ ସୁଖଲାଭ ସକାଶେ, ପଶୁତ୍ୱ ପରିବର୍ତ୍ତେ ଦେବତ୍ୱ ଲାଭ ସକାଶେ, ଉପକାରୀ ନିକଟରେ କୃତଜ୍ଞ ରହିବା ଅବଶ୍ୟ କର୍ତ୍ତବ୍ୟ ଥିବା ଜ୍ଞାନରେ ପାପ ପଥ ପରିତ୍ୟାଗ କରି ପୁଣ୍ୟମାର୍ଗରେ ଅଗ୍ରସର ହେବା ପ୍ରତ୍ୟେକ ବ୍ୟକ୍ତିର ଏକାନ୍ତ କର୍ତ୍ତବ୍ୟ । କିନ୍ତୁ ପାପର ଭୀଷଣତା ଉପଲବ୍ଧି କରି ନ ପାରିଲେ ପୁଣ୍ୟମାର୍ଗରେ ଅଗ୍ରସର ହେବାର ଅନ୍ୟ ଉପାୟ ନାହିଁ । କିନ୍ତୁ ପାପର ଭୀଷଣ ଉପଲବ୍ଧି ସକାଶେ ପାପ ପ୍ରତି ଘୃଣା ଉଦ୍ରେକ କରଣାର୍ଥ ଏବଂ ପାପବୋଧର ପ୍ରବଳତା ନିମନ୍ତେ ଆମ୍ଭମାନଙ୍କୁ ଆତ୍ମ-ଦୋଷଦର୍ଶୀ ହେବାକୁ ହେବ—ଅତୀତ ପାପରାଶି ସ୍ମରଣ କରି ତନ୍ନିମିତ୍ତ ଅନୁତପ୍ତ ହେବାକୁ ହେବ ଏ କଥା ସତ୍ୟ ଯେ ପାପବୋଧର ପ୍ରବଳତା ସଙ୍ଗେ ସଙ୍ଗେ ଅନୁତାପର ତୀବ୍ରତା ବୃଦ୍ଧି ଲାଭ କରିବ । ଏହା ବୋଲି ପ୍ରାୟଶ୍ଚିତ୍ତରୁ କ୍ଷାନ୍ତ ହେବା ଉଚିତ ନୁହେଁ । ପୂର୍ବ ପାପ ସ୍ମରଣ କଲେ ତନ୍ନିମିତ୍ତ ସନ୍ତପ୍ତ ହେଲେ କେବଳ କଷ୍ଟଭୋଗ ହେବ, ଇଷ୍ଟମାତ୍ର ଆନନ୍ଦ ଲାଭ ହେବନାହିଁ । ଏହା ଭ୍ରମବିଶ୍ୱାସ । ପାପ ସ୍ମରଣ କଲେ ଯେପରି ଅନିର୍ବଚନୀୟ କଷ୍ଟ ହୁଏ, ପାପକୁ ଚିହ୍ନି ପାରି ତହିଁରୁ ବିରତ ହୋଇଥିବାର ସ୍ମରଣ କଲେ ତତୋଧିକ ଆନନ୍ଦ ଲାଭ ହୁଏ । ପରିଶେଷରେ ସେହି ଆନନ୍ଦ କଷ୍ଟକୁ ବିନାଶ କରି ସ୍ୱୟଂ କ୍ରମଶଃ ଉନ୍ନତ, ବର୍ଦ୍ଧିତ ଏବଂ ଘନୀଭୂତ ହୁଏ । ତେତେବେଳେ ମାନବାତ୍ମା ଦୁଃଖକ୍ଲେଶର ଅସ୍ତିତ୍ୱ ବିସ୍ମୃତ ହୋଇ ଆନନ୍ଦସାଗରରେ ମଗ୍ନ ହୁଏ । ଅତଏବ ଅନୁତାପ ଜନିତ କଷ୍ଟ ଭୟରେ ଅମୃତୋପମ ଆନନ୍ଦଭୋଗରୁ ବଞ୍ଚିତ ହେବା ବିଧେୟ ନୁହେଁ ।

ଉପସଂହାରରେ ନିବେଦନ କରୁଅଛୁଁ ଯେ ଯେଉଁମାନେ ମାନବ ଜୀବନ ସଫଳ କରିବା, ଦେବଦୁର୍ଲ୍ଲଭ ଅଖଣ୍ଡ ଆନନ୍ଦ ଉପଭୋଗ କରିବାର ଇଚ୍ଛା କରନ୍ତି, ସେମାନେ ପରର ଗୁଣ ନିଜର ଦୋଷ ଅନ୍ୱେଷଣ କାର୍ଯ୍ୟରେ ଦତ୍ତମନା ହେଉନ୍ତୁ—ନିଜ ନିଜର ଅନୁଷ୍ଠିତ ଅତୀତ ପାପରାଶି ସ୍ମରଣ କରି ଲଜ୍ଜିତ ଏବଂ ଅନୁତପ୍ତ ହେଉନ୍ତୁ, ପାପକୁ ଭୀଷଣ ବିଷଧରତାର ମନେ କରି ପାପାଚରଣରୁ ନିବୃତ୍ତ ହେଉନ୍ତୁ, ତାହାହେଲେ ସେମାନେ ପ୍ରକୃତ ସୁଖଶାନ୍ତି ଲାଭ କରି ପରିଶେଷରେ ପରମପିତାଙ୍କ ଅମୃତମୟ କୋଡ଼ରେ ଆଶ୍ରୟଲାଭ କରି ପାରିବେ ।

---

* (ପାପର ଦଣ୍ଡଭୋଗ ବ୍ୟତୀତ ମନୁଷ୍ୟ ପାପମୁକ୍ତ ହେବ, ଏହା ଯଥାର୍ଥ କଥା ନୁହେଁ । ଛୋଟ ବଡ଼ ପ୍ରତ୍ୟେକ ପାପର ଦଣ୍ଡ ମନୁଷ୍ୟକୁ ଇହକାଳରେ ହେଉ ବା ପରକାଳରେ ହେଉ ଅବଶ୍ୟ ଭୋଗ କରିବାକୁ ହେବ । ପ୍ରାୟଶ୍ଚିତ୍ତ ପାପର ଦଣ୍ଡଛଡ଼ା ଆଉ କିଛି ନୁହେଁ । ପାପୀ ଈଶ୍ୱରବିଚ୍ୟୁତ ହୋଇ ମୋହପ୍ରଯୁକ୍ତ ଯେଉଁ ଅଶେଷ ଯନ୍ତ୍ରଣା ଭୋଗ କରେ, ତାହା ମଧ୍ୟ ପାପର ଦଣ୍ଡ । ମାତ୍ର ପାପବୋଧ ଜନ୍ମିଲେ ସଜ୍ଞାନରେ ମାନବ ଯେଉଁ ଦଣ୍ଡ ଗ୍ରହଣ କରେ, ତାହାହିଁ ପ୍ରାୟଶ୍ଚିତ୍ତ । ଲେଖକ ମହାଶୟ ଏହି ପ୍ରବନ୍ଧରେ ପ୍ରାୟଶ୍ଚିତ୍ତ ସମ୍ବନ୍ଧରେ ଯେଉଁ ମତ ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି । ସେଥିରେ ଆମ୍ଭମାନଙ୍କର ମତଭେଦ ନାହିଁ । ଏହି ପ୍ରାୟଶ୍ଚିତ୍ତ ମନୁଷ୍ୟର ଇଚ୍ଛା ଅନିଚ୍ଛା ଉପରେ ନିର୍ଭର କରେ ନାହିଁ—ସମସ୍ତଙ୍କୁ ଏହାର ଉତ୍ତର ଦେଇ ମୁକ୍ତିରାଜ୍ୟକୁ ଯିବାକୁ ହେବ । ଜୀବନରେ ପାପର ମାତ୍ରା ଯେତେ ଅଧିକ ହେବ, ପ୍ରାୟଶ୍ଚିତ୍ତର ମାତ୍ରା, ଦଣ୍ଡର ମାତ୍ରା ତେତେ କଠିନ ହେବ । ସୁତରାଂ ବେଳହୁଁ ସାବଧାନ ହୋଇ ପ୍ରାଣରେ ପ୍ରବଳ ପାପବୋଧ ଜାଗ୍ରତ ରଖିବାକୁ ଚେଷ୍ଟା କରିବା ବୁଦ୍ଧିମାନର କାର୍ଯ୍ୟ । ଦୁର୍ବଳମାନବ ପକ୍ଷରେ ପାପ ଅନିବାର୍ଯ୍ୟ । ମାତ୍ର ପାପ ସଙ୍ଗେ ସଙ୍ଗେ ପ୍ରାୟଶ୍ଚିତ୍ତ ଆରମ୍ଭ ହେଲେ ଏହା ସ୍ୱର୍ଗରାଜ୍ୟର ସୋପାନ ହୁଏ । ସୁତରାଂ ପ୍ରାୟଶ୍ଚିତ୍ତର ଅର୍ଥ ଇଚ୍ଛା ପୂର୍ବକ ପାପର ଶାସ୍ତି ଗ୍ରହଣ କରିବା । ( ଉତ୍କଳ ସାହିତ୍ୟ ସମ୍ପାଦକ )

———

# "ଜିହ୍ୱା ସୁଖ ଓ ଜୀବନ"

(୧୮୯୭ ମସିହାରେ ରଚିତ)

(ନୀଳମଣି ବିଦ୍ୟାରତ୍ନଙ୍କ ଲିଖିତ ଏହି ପୁସ୍ତକର ସମାଲୋଚନା କରିଛନ୍ତି
**ଶ୍ରୀ ବୈକୁଣ୍ଠନାଥ ସାମନ୍ତରାୟ** ।)

(ଉତ୍କଳସାହିତ୍ୟ-୧ମଖଣ୍ଡ, ୪ର୍ଥ ସଂଖ୍ୟା, ବୈଶାଖ ୧୩୦୪)

ଏହି ଗ୍ରନ୍ଥ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଙ୍କଳିତ ଓ ବିନା ମୂଲ୍ୟରେ ବିତରିତ । ଏହାର ସମାଲୋଚନା କରିବା ପୂର୍ବରୁ ମନୁଷ୍ୟଜାତି ଆଦିମ କାଳରେ କି କି ପଦାର୍ଥ ଆହାର କରି ଜୀବନଧାରଣ କରୁଥିଲେ, ଅଗ୍ରେ ତାହାର ଆଲୋଚନା କରାଯାଉ ।

( Pre-historic man.) ଅତି ଅସଭ୍ୟାବସ୍ଥାରେ ମନୁଷ୍ୟ ଜାତିର ଇତିହାସ ଆରମ୍ଭରେ ଅତି ପୂର୍ବକାଳରେ ମନୁଷ୍ୟ ଜଳଚର ଓ ସ୍ଥଳଚର ଜୀବ ଆହାର କରି ପ୍ରାଣ ଧାରଣ କରୁଥିଲା । ଯେଉଁମାନେ ସମୁଦ୍ର ବା ନଦୀ ତୀରରେ ବାସ କରୁଥିଲେ ସେମାନେ ଗେଣ୍ଡା ଶାମୁକା ପ୍ରଭୃତି ଜଳଚର ଜୀବ ଆହାର କରୁଥିଲେ ଏବଂ ଯେଉଁମାନେ ଅରଣ୍ୟରେ ବାସ କରୁଥିଲେ ସେମାନେ ହିଂସ୍ରଜନ୍ତୁ ପ୍ରାୟ ବନ ମଧ୍ୟରେ ଲୁଚି ବସୁଥିଲେ—ସମ୍ମୁଖରେ ଗୋଟିଏ କ୍ଷୁଦ୍ର ଜୀବକୁ ଦେଖିଲେ ଦଉଡ଼ିଯାଇ ତାକୁ ମାଡ଼ିବସି—ମାଡ଼ି ଦଳିଦେଇ ବଧ କରି କଞ୍ଚା ଖାଉଥିଲେ । ଏଥିରେ ଅସୁବିଧା ଘଟିଲା । ସବୁଦିନ ଶିକାର ମିଳିଲା ନାହିଁ । କୌଣସି ଜନ୍ତୁ ଧରାପଡ଼ି ହାତରୁ ଖସିଗଲା । କେଉଁଠା ବା ଆକ୍ରମଣକାରୀକୁ କ୍ଷତବିକ୍ଷତ କରି ପଳାଇଗଲା ।

ବିଶ୍ୱନିର୍ମାତା ମନୁଷ୍ୟଜୀବନ ପଶୁଜୀବନ କରି ସୃଷ୍ଟି କରି ନ ଥିଲେ—ମନୁଷ୍ୟ ଭିତରେ ଗୋଟିଏ ଅଦ୍ଭୁତ ଶକ୍ତି ଦେଇଥିଲେ ସେହି ଶକ୍ତିର ପ୍ରଥମ ବିକାଶ ଆରମ୍ଭ ହେଲା । ଅନୈତିହାସିକ ମନୁଷ୍ୟ ଭାଳି ବସିଲା ସହଜରେ କିପରି ଜୀବନ ବଧ କରି ଜୀବନଧାରଣ କରିବ । କାଣ୍ଡ ପ୍ରସ୍ତୁତ କଲା—ତୀର ନିର୍ମାଣ କଲା । ତୀର ଅଗ୍ରଭାଗରେ ଗୋଜ ପଥରଖଣ୍ଡ ଯୋଖିଲା । ଏହି ଉଦ୍ଭାବିତ ଅସ୍ତ୍ର ଦ୍ୱାରା ଜୀବ ମାରି ଜୀବନ ଧାରଣ କଲା । ଏହି ଉଦ୍ଭାବନ ଯୁଗକୁ ପ୍ରସ୍ତରଯୁଗ ବୋଲାଯାଏ ।

ଏଣେ ସମୁଦ୍ରତୀରନିବାସୀ ମନୁଷ୍ୟ ଅଯତ୍ନଲବ୍ଧ ତଟବିକ୍ଷିପ୍ତ ଅଚଳାଶ୍ମ-ଜଳଜ-ଜୀବ ଆହାର କରି ଲୌହଗଯୁଗକୁ ଅନାଇ ବସିଥିଲି । ପ୍ରୟୋଜନ ବଢ଼ିଲା । "Necessity is the mother of invention." ପ୍ରୟୋଜନହିଁ ଉଦ୍‌ଭାବନର ପ୍ରସୂତି । ପ୍ରୟୋଜନ ଲୌହ ପାଇଲା । ପ୍ରୟୋଜନ ଲୌହଯୁଗକୁ ଆଣିଲା । ଲୌହଦ୍ୱାରା ଧନୁର୍ବାଣ ଓ ବର୍ଚ୍ଛା ପ୍ରସ୍ତୁତ ହେଲା । ପଶୁପକ୍ଷୀ ମନୁଷ୍ୟର ସୁଲଭ ଖାଦ୍ୟରେ ପରିଣତ ହେଲେ । ସମୁଦ୍ର ତୀରବାସୀ ମନୁଷ୍ୟମାନେ ବୃକ୍ଷ ଛେଦନ କରି ତହିଁରେ ଡଙ୍ଗା ବନାଇ ତାହାକୁ ଜଳରେ ଭସାଇ ଚେଷ୍ଟା ଦ୍ୱାରା ମତ୍ସ୍ୟାଦି ଜଳଜୀବ ଆହାର କରି ଜୀବନଯାତ୍ରା ନିର୍ବାହ କଲେ ।

ଜୀବ ସୃଷ୍ଟିକାଳରୁ କତିପୟ ଉଦ୍ଭିଦଭୋଜୀ ଜୀବ ବ୍ୟତୀତ ଜୀବସଂସାର ଜୀବଖାଇ ଜୀବନଧାରଣ କରୁଅଛି । ଜୀବ ଜୀବର ଆହାର । ଜୀବ ଜୀବର ଜୀବନ । ମନୁଷ୍ୟ ଏହି ଜଗନ୍ନମ-ଜୀବ ଭୋଜନ ନିୟମର ଅନ୍ତର୍ଗତ ହୋଇ ଆଦିମ ଜୀବନର କ୍ରମୋନ୍ନତି କରିଅଛି । ମନୁଷ୍ୟଗୋଷ୍ଠୀ ବୃଦ୍ଧିକୁ ଲଭିଲା । ମୃଗୟା-ଲବ୍ଧ ଜୀବରେ ସର୍ବସମୟରେ ସର୍ବଜନ ଜୀବନ କଟାଇବାର ସୁବିଧା ନ ହେବାରୁ ଅଯତ୍ନଜାତ ବନର ଫଳମୂଳ ଶସ୍ୟ ଦ୍ୱାରା ଅଭାବ ପୂରଣ ଓ ଜୀବନ ରକ୍ଷା ହେଲା । ବନ-ଜାତ ଫଳାଦିରେ ଅଭାବ ଦୂର ନ ହେବାରୁ ଗୋ ମେଷାଦି ଓ କୃଷିର ଉଦ୍ଭାବନା ହେଲା । ଏହିଠାରୁ କୃଷିଯୁଗର ଆରମ୍ଭ । ଏହି କୃଷିଯୁଗ ମହାଯୁଗ-ଆର୍ଯ୍ୟଯୁଗପୁଣ୍ୟ ଯୁଗ-ଏ ଜ୍ଞାନଯୁଗ । ମଧ୍ୟ ଏସିଆଖଣ୍ଡରେ ଏହି ଆର୍ଯ୍ୟଯୁଗର ଆବିର୍ଭାବ ହୋଇ ସମସ୍ତ ଇଉରୋପ ମହାଦେଶ ଏବଂ ପୃଥିବୀର ଅନ୍ୟ ସଭ୍ୟ ଭୂଖଣ୍ଡରେ ବ୍ୟାପ୍ତ ହେଲା । ପୂଜ୍ୟପାଦ ପିତୃପୁରୁଷଗଣ ଏକ ହସ୍ତରେ ମୃଗୟାର ଉପଜୀବ୍ୟ ଧନୁର୍ବାଣ ଏବଂ ଅନ୍ୟ ହସ୍ତରେ କୃଷିର ଉପଜୀବ୍ୟ ଧାରଣ କରି ଅନାର୍ଯ୍ୟନିବାସ ଭାରତ ଭୂମିରେ ପଦାର୍ପଣ କଲେ । ଆର୍ଯ୍ୟଗଣ ଏହି ପୁଣ୍ୟଯୁଗକୁ ଭାରତକୁ ଯେଉଁଦିନ ଆଣିଲେ ସେହିଦିନ ଠାରୁ ଏ ଭୂଭାଗ ପୁଣ୍ୟଭୂମି ରୂପେ କଥିତ ହେଲା ।

କୃଷିଯୁଗ-ଦେବଯୁଗ-ସତ୍ୟଯୁଗ । ଏହି ଯୁଗର ଆବିର୍ଭାବରେ ହିଂସା, ନୃଶଂସତା, ଜୀବଦ୍ରୋହିତା କ୍ଷୀଣ ହେଲା । ପ୍ରକୃତି ମନୁଷ୍ୟକୁ ଛାଡ଼େ ନାହିଁ । ମନୁଷ୍ୟ ପ୍ରକୃତିକୁ ସହଜରେ ଛାଡ଼େ ନାହିଁ । ଆମିଷ ନିରାମିଷ ଭୋଜନ ମିଶାମିଶି ହୋଇ ଚଳିଲା ।

"ନ ମାଂସ ଭକ୍ଷଣେ ଦୋଷୋ × × × ପ୍ରବୃତ୍ତିରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ।"

ତୁମେ ମୁଁ ପ୍ରବୃତ୍ତିମାର୍ଗରେ ରହିଲୁଁ । ମହାତ୍ମା ମହର୍ଷିଗଣ ମହାଫଳ ଲାଭ ଆକାଂକ୍ଷେ ନିବୃତ୍ତି ମାର୍ଗକୁ ଆଶ୍ରୟ କଲେ ।

ଭାରତର ଯେ ଜ୍ଞାନୋନ୍ନତ ହୋଇଅଛି—ଆଧ୍ୟାତ୍ମିକ ଉନ୍ନତ ହୋଇଅଛି, ତାହାର ଆଦିକାରଣ ଫଳମୂଳ ଭୋଜନ ମହର୍ଷିଗଣ । ସେମାନଙ୍କ ସଞ୍ଚିତ ଜ୍ଞାନଭଣ୍ଡାର କଣା ମାତ୍ର ନଷ୍ଟ ହେବାର ଆଶଙ୍କା ନାହିଁ । "All nature teaches that no good thing which has once been done passes utterly away. କୌଣସି ଉତ୍ତମ ପଦାର୍ଥ ଏକାବେଳକେ ବିନଷ୍ଟ ହୁଏ ନାହିଁ । ଏ ଜ୍ଞାନଭଣ୍ଡାର ଜଗତକୁ ଚିରକାଳ ଜ୍ଞାନାମୃତ ପାନ କରାଇ ଅମର କରାଇବ ।

ଆମ୍ଭେମାନେ ବିଦ୍ୟାରତ୍ନ ମହାଶୟଙ୍କର "ଜିହ୍ବାସୁଖ ଓ ଜୀବନ"କୁ ଛାଡ଼ି ଅନେକ ଦୂରକୁ ଉଠି ଯାଇଥିଲୁଁ—ଏବେ ଲେଉଟି ଆସିବୁଁ ।

ଇନ୍ଦ୍ରିୟନିଗ୍ରହ ମାନୁଷ୍ୟର ମହାକର୍ମ ଏବଂ ତହିଁରୁ ମହାଫଳ ଜାତ ହୁଏ । ଅତଏବ ଇନ୍ଦ୍ରିୟନିଗ୍ରହ ସାଧନ କରିବା ପୂର୍ବରୁ ଆହାରାଦି ପ୍ରତି ବିଶେଷ ଲକ୍ଷ୍ୟ ରଖିବାକୁ ହେବ । ଏ ସମ୍ବନ୍ଧରେ ମହର୍ଷିଗଣ କଣ କହିଅଛନ୍ତି ?

ଆୟୁଃ ସତ୍ତ୍ୱବଳାରୋଗ୍ୟ ସୁଖପ୍ରୀତି ବିବର୍ଦ୍ଧନାଃ ।
ରସ୍ୟା ସ୍ନିଗ୍ଧାଃ ସ୍ଥିରା ହୃଦ୍ୟାଃ ଆହାରାଃ
ସାତ୍ତ୍ୱିକପ୍ରିୟାଃ ।

ଯେ ଦ୍ରବ୍ୟ ଏୟୁ, ଉତ୍ସାହ, ବଳ, ସ୍ୱାସ୍ଥ୍ୟ, ରୁଚି ଓ ସୁଖ ଏବଂ ପ୍ରସାଦର ବୃଦ୍ଧିକାର ଏବଂ ଯାହା ରସଯୁକ୍ତ, ସ୍ନିଗ୍ଧ, ସାରବିଶିଷ୍ଟ ଅର୍ଥାତ୍ ପୁଷ୍ଟିକର ଏବଂ ଯାହା ଦେଖିଲେ ଆହାର କରିବାକୁ ପ୍ରବୃତ୍ତି ହୁଏ, ସେହି ସକଳ ଦ୍ରବ୍ୟ ସାତ୍ତ୍ୱିକର ଆହାର କରିବା ଉଚିତ୍ ।

ଲଘୁପାକଂ ପ୍ରିୟଂ ସ୍ନିଗ୍ଧଂ ଯଥା ବା ଧାତୁ ଶୋଷଣମ୍
ମନୋଭିଲଷିତଂ ଯୋଗୀ ଦ୍ରବ୍ୟ ଭୋଜନ ମାଚରେତ ।

ଲଘୁପାକ, ପ୍ରିୟ, ସ୍ନିଗ୍ଧ, ଧାତୁ ପୋଷକ, ମନପ୍ରଫୁଲ୍ଲକର ଓ ଦୋଷଶୂନ୍ୟ ଦ୍ରବ୍ୟମାନ ଯୋଗୀଭୋଜନ ଯୋଗ୍ୟ ।

ମିଶାମିଶି-ଯଥା—

ମତ୍ସ୍ୟାଶୀ ନାର୍ଚ୍ଚୟେତ୍ ବିଷ୍ଣୁଂ
ମାଂଶାସୀ ନାର୍ଚ୍ଚୟେତ୍ ଶିବଂ
ମତ୍ସ୍ୟମାଂସୌ ପରିତ୍ୟଜ୍ୟ
ନାର୍ଚ୍ଚୟେତ୍ ଶକ୍ତି ଦେବତାଂ ।

ଯେବେ ପରିତ୍ରାଣ ଓ ଶିବ ଇଚ୍ଛାକର, ତେବେ ମତ୍ସ୍ୟ, ମାଂସ ପରିତ୍ୟାଗ କର । ଶକ୍ତି ସେବା ପ୍ରୟୋଜନ ହେଲେ ଉକ୍ତବିଧ ଆହାର ତ୍ୟାଗ ନିଷେଧ ।

ବିଦ୍ୟାରତ୍ନ ମହାଶୟ ନରଜଗତକୁ ନିବୃତ୍ତମାର୍ଗରେ ପଥିକ କରାଇବାକୁ ପ୍ରୟାସୀ ହେତୁ କି ଏଥିରେ ମହାଫଳ ଅଛି । ପୂଜନୀୟ ମହର୍ଷିଗଣ ଏହିପରି ପ୍ରଦର୍ଶନ କରିଅଛନ୍ତି । 'ଜିହ୍ୱାସୁଖ ଓ ଜୀବନ'ରେ ତାହାର ଭୂରିଭୂରି ପ୍ରମାଣ ସଂଗୃହୀତ ହୋଇଅଛି । ପ୍ରତ୍ୟେକ ଶିକ୍ଷିତ ନରନାରୀଙ୍କର ଏହା ପଢ଼ି ଏବଂ ପଢ଼ି ଅନ୍ୟକୁ ଶୁଣାଇବା ଉଚିତ । ସାଧୁ ଯାହାର ଇଚ୍ଛା-ସାଧୁ ଯାହାର ଚେଷ୍ଟା—ସାଧୁ ଯାହାର କାର୍ଯ୍ୟ, ସେ ଜନସମାଜର ବନ୍ଧୁ । ଆମ୍ଭେମାନେ ମହାଜନ ଶ୍ରୀ ସେତାରାମଙ୍କ ସହିତ ଉତ୍କଳରତ୍ନ ବିଦ୍ୟାରତ୍ନ ମହାଶୟଙ୍କୁ ସାଧୁବାଦ ଦେଇ ଏହି ପ୍ରବନ୍ଧ ଉପସଂହାର କଲୁ ।

---

# ଗୋ ମହାତ୍ମ୍ୟ

ଶ୍ରୀ ନୀଳମଣି ମିଶ୍ର ଶର୍ମା
ବିଦ୍ୟାରତ୍ନ ବାମଣ୍ଡା

('ଉତ୍କଳ ପ୍ରଭା'-ଦ୍ୱିତୀୟଭାଗ—୧୧ଶ ସଂଖ୍ୟା, ଫାଲଗୁନ-ସନ ୧୩୦୦ ସଂଖ୍ୟାରେ ପ୍ରକାଶିତ-ପୃ ୩୨୧-୩୩୦)

ଗୋ-ଜାତି ଦ୍ୱାରା ମାନବ ସମାଜ ଯେ କେତେ ପରିମାଣରେ ଉପକୃତ, ଏ କଥା ଆଉ କାହାରିକୁ ବୁଝାଇଦେବାକୁ ହେବନାହିଁ । ଯେଉଁ ଗୋ-ଜାତିର ଦଧି, ଦୁଗ୍ଧ, ଘୃତ ପ୍ରଭୃତି ଅତ୍ୟନ୍ତ ରୁଚିକର, ତୃପ୍ତିପ୍ରଦ ଏବଂ ବଳକର ଓ ଆୟୁବର୍ଦ୍ଧକ, ଯେଉଁ ଗୋ-ଜାତିର ମୂତ୍ର ପାନରେ ଅଭକ୍ଷ ଭକ୍ଷଣାଦି ଗୁରୁତର ପାପ ଧ୍ୱଂସ ହୁଏ ଏବଂ ଶରୀରର ନାନା ଉପକାର ସାଧିତ ହୁଅଇ, ଯେଉଁ ଗୋ-ଜାତିର ମଳ ଭୂମିର ଉର୍ବରଶକ୍ତି ବୃଦ୍ଧି କରି ତାହାକୁ କୃଷିର ଉପଯୋଗୀ କରେ—ପୁଣି ଶୁଷ୍କ ହେଲେ କାଷ୍ଠବିହୀନ ସ୍ଥାନରେ ଜାଳେଣିକାଷ୍ଠର କାର୍ଯ୍ୟ କରେ । ଯେଉଁ ଗୋ-ଜାତିର ସାହାଯ୍ୟରେ ଆମ୍ଭମାନଙ୍କର ନିତ୍ୟବ୍ୟବହାର୍ଯ୍ୟ ସଂଗୃହୀତ ହେଉଅଛି, ଯେଉଁ ଗୋ-ଜାତିର ଚର୍ମ, ପାଦୁକା ପ୍ରସ୍ତୁତ ପ୍ରଭୃତି ବିବିଧ ଶିଳ୍ପ କାର୍ଯ୍ୟରେ ଉପଯୋଗୀ, ଯେଉଁ ଗୋ-ଜାତି ଦୁର୍ଗମ ଦେଶରେ ଯାଇ ବାଣିଜ୍ୟ କରିବା ବିଷୟରେ ଆମ୍ଭମାନଙ୍କର ପ୍ରଧାନ ଅବଲମ୍ବନ, ଯେଉଁ ଗୋ-ଜାତିର ଏକମାତ୍ର ଦୁଗ୍ଧ ଉପରେ ଆମ୍ଭମାନଙ୍କର ଶୈଶବ ଜୀବନ ନିର୍ଭରେ କରେ, ସେହି ଗୋ-ଜାତିର ଉପକାରିତା କି ଏ ଦେଶରେ କାଗଜ କଲମର ସାହାଯ୍ୟ ନେଇ ବୁଝାଇ ଦେବାକୁ ହେବ ? ଗୋ-ଜାତି ଦ୍ୱାରା ଯଦିବା ଆମ୍ଭମାନଙ୍କର ଆଉ କିଛି ଉପକାର ସାଧିତ ହେଉ ନ ଥାନ୍ତା, ତେବେ ମଧ୍ୟ ଗୋ-ରସ ମନୁଷ୍ୟର ଶୈଶବ ଜୀବନ ରକ୍ଷାର ଏକମାତ୍ର ଅବଲମ୍ବନ ହେବାରୁ ଗୋ-ଜାତି ଆମ୍ଭମାନଙ୍କର ଏକାନ୍ତ ପୂଜନୀୟ ଓ ଶ୍ରଦ୍ଧାର ପାତ୍ର । କିନ୍ତୁ ବାସ୍ତବରେ ଗୋ-ଜାତିର ଗୁଣ ସେତିକି ନୁହେଁ—ସେମାନଙ୍କ ଦ୍ୱାରା ଆମ୍ଭମାନଙ୍କର ଐହିକ ପାରତ୍ରିକ ଅନନ୍ତ ଉପକାର ସାଧିତ ହେଉଅଛି । ଗୋ-ଜାତି ଦ୍ୱାରା ମାନବ ସମାଜ ଅଶେଷ ପ୍ରକାରରେ ଉପକୃତ ବୋଲି ଆମ୍ଭମାନଙ୍କର ପୂର୍ବପୁରୁଷମାନେ କହିଯାଇଅଛନ୍ତି ଯେ

"ନ ଗୋଭ୍ୟୋ ତୁଲ୍ୟଂ ଧନମସ୍ତି କିଞ୍ଚିତ୍" ଏହି ଉକ୍ତି ଯେ ଏକାନ୍ତ ସାରବାନ, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ ।

ବାସ୍ତବରେ ଜଗତ ମଧ୍ୟରେ ଅନେକ ପଶୁ, ପକ୍ଷୀ ଅଛନ୍ତି, କିନ୍ତୁ କୌଣସି ପଶୁପକ୍ଷୀ ପ୍ରତି ଆମ୍ଭମାନଙ୍କର ଜୀବନ ବିଶେଷ ଭାବରେ ନିର୍ଭର କରି ନାହିଁ । ହାତୀ, ଘୋଡ଼ା, ଉଷ୍ଟ୍ରାଦି ବିଳାସର ଉପଯୋଗୀ କିନ୍ତୁ ଜୀବନରକ୍ଷାର ଉପଯୋଗୀ ନୁହନ୍ତି । ହାତୀ, ଘୋଡ଼ା ନ ଥିଲେ ମାନବ ସମାଜର ବିଶେଷ କିଛି କ୍ଷତି ହେବ ନାହିଁ, କିନ୍ତୁ ଗୋ-ଜାତି ଅଭାବରେ ମାନବ ସମାଜ ଦଣ୍ଡେ ଚଳି ପାରିବ ନାହିଁ । ଆମ୍ଭେମାନେ ଗୋ-ଜାତି ଦ୍ୱାରା ଯେପରି ଉପକାର ପାଉଅଛୁଁ, ଅନ୍ୟ ପଶୁଦ୍ୱାରା ତହିଁର ସହସ୍ରାଂଶରୁ ଏକାଂଶ ସୁଦ୍ଧା ପାଉଅଛୁଁ କି ନା ସନ୍ଦେହ ବିଷୟ । କେଉଁ ପଶୁଦ୍ୱାରା ଆମ୍ଭମାନଙ୍କର ଅନ୍ନ ସଂସ୍ଥାପନ ହେଉଅଛି ! କେଉଁ ପଶୁର ଦଧି, ଦୁଗ୍ଧ ଘୃତ, ଗୋ-ରସ ପରି ଆମ୍ଭମାନଙ୍କର ଉପକାରରେ ଲାଗୁଅଛି ? କେଉଁ ପଶୁର ମଳମୂତ୍ର ପବିତ୍ରତା ସମ୍ପାଦନ ନିମନ୍ତେ ଉପଯୋଗ କରା ହେଉଅଛି ?

କେଉଁ ପଶୁର ମଳ, ମୂତ୍ର, ଦୁଗ୍ଧର ଏପରି ଆଶାତୀତ ପବିତ୍ରତା କୀର୍ତ୍ତିତ ହୋଇଅଛି ? କେଉଁ ପଶୁର ମଳ ଦ୍ୱାରା ଗୃହଶୁଦ୍ଧି କାର୍ଯ୍ୟ ସାଧିତ ହୁଏ ? କେଉଁ ପଶୁର ମଳରେ ଗୃହ ଲେପନ କଲେ ତାହା ବିପ୍ରମାନଙ୍କର ବାସଯୋଗ୍ୟ ହୋଇ ସେ ସ୍ଥାନରୁ ଅପବିତ୍ର ଅନ୍ତର୍ହିତ ହୁଅଇ ? ଏ ସବୁର ଉତ୍ତର ସ୍ୱରୂପ କି ଆମ୍ଭମାନଙ୍କୁ ପୁନଶ୍ଚ ଗୋ-ଜାତିର ନାମୋଚ୍ଚାରଣ କରିବାକୁ ହେବ ? ଶାସ୍ତ୍ର ପ୍ରମାଣ ଯଥା—

ଯଦ୍‌ଗୋମୟେନ ପରିଲେପିତ ଭୂମିଭାଗେ
ତେ ନୈବଲେପିତ ଗୃହେଽପିବସନ୍ତି ବିପ୍ରାଃ ।
ତେଷାଂକୁଲେ ଭବତି ନାଽସୁରଭୂତ ବାଧା
ବ୍ୟାଧିଃ କୁମାରୁତଃ କ୍ୱଚୋପି ନ ତତ୍ରଯାତି ।

ଯେଉଁ ଗୋ-ଜାତି ଆମ୍ଭମାନଙ୍କର ଏଡ଼େ ଆବଶ୍ୟକ, ଯେଉଁ ଗୋଜାତିର ଦଧି, ଦୁଗ୍ଧ, ମଳ ମୂତ୍ର ଏଡ଼େ ଉପକାରୀ, ସେହି ଗୋ-ଧନ ପୁଣି ସତ୍ପାତ୍ରରେ ଦାନ କଲେ ଗୋ-ଦାତାର ପିତୃପିତାମହ, ଋଷିବୃନ୍ଦ ଓ ଦେବତାମାନେ ପ୍ରଫୁଲ୍ଲ ଚିତ୍ତରେ ପ୍ରସନ୍ନ ରହନ୍ତି, ପ୍ରମାଣ ଯଥା—

'ଧାସ୍ମମାନାଂଚ ଗାଂ ଦୃଷ୍ଟ୍ୱା ନୃତ୍ୟନ୍ତି ପ୍ରପିତାମହ
ପ୍ରୀସ୍ୟନ୍ତେ ଋଷୟଃ ସର୍ବେ ତୁଷ୍ୟାମୋ ଦେବତୈଃ ସହ ।

କେବଳ କ ଏତିକ ମାତ୍ର ଫଳ ? ନା, ଗୋ-ପ୍ରଦାନ କଲେ ଗୋ-ପ୍ରଦାତାର ପୂର୍ବବର୍ତ୍ତୀ ସାତପୁରୁଷ ଏବଂ ସାତପୁରୁଷ ପାପମୁକ୍ତ ହୋଇ ସ୍ୱର୍ଗ ଲାଭର ଅଧିକାରୀ ହୁଅନ୍ତି । ଏ ସମ୍ବନ୍ଧେ ଆଦିତ୍ୟ ପୁରାଣରେ ଲିଖିତ ଅଛି ଯେ—

ଗୋ ପ୍ରଦାନେତିାରୟେତ
ସପ୍ତ ପୂର୍ବାନ୍ତର ସ୍ତଥା ।

ପୁଣି ସ୍ୱୟଂ ଗୋ-ପ୍ରଦାତା ପ୍ରଦତ୍ତ ଗୋ'ର ଲୋମପରିମିତ ବର୍ଷଯାଏ ସ୍ୱର୍ଗବାସ କରି ପୁନଶ୍ଚ ଗୋ-ଭକ୍ତ ହୋଇ ଜନ୍ମଗ୍ରହଣ କରେ । ଅର୍ଥାତ ଏକମାତ୍ର ଗୋ-ଦାନ କଲେ ଗୋ-ଦାତା ଜନ୍ମଜନ୍ମାନ୍ତର ଗୋ-ଭକ୍ତ ହୋଇ ସ୍ୱର୍ଗସୁଖ ଭୋଗ କରଇ । ତାହା ଭାଗ୍ୟରେ ଆଉ ନରକଦର୍ଶନ ଘଟଇ ନାହିଁ । ଏ ସମ୍ବନ୍ଧେ ମହାଭାରତୀୟ ପ୍ରମାଣ ଏହି ଯେ—

ଯାବନ୍ତି ରୋମାଣି ଭବନ୍ତି ଧେନ୍ୱା—
ସ୍ତାବନ୍ତି ବର୍ଷାଣି ମସ୍ୱାପ୍ନୁତେ ଖଃ
ସ୍ୱର୍ଗାଚ୍ୟୁତଶ୍ଚାପି ତତ୍ୟସ୍ମୀ ଲୋକେ
କୁଲେ ସମୁତ୍ପସ୍ୟତି ଗୋମତାଂ ସଃ ।

ଅନ୍ୟ କୌଣସି ପଶୁକୁ ଦାନ କଲେ ଏପରି ଫଳ କଦାଚ ମିଳି ନ ପାରେ । ଅନେକେ ଅଜ୍ଞାନତା ବଶତଃ ଗୋ-ଜାତି ପ୍ରତି ସାମାନ୍ୟ ପଶୁଜ୍ଞାନ କରନ୍ତି, କିନ୍ତୁ ପ୍ରକୃତରେ ଜ୍ଞାନୀଲୋକ ଗୋ-ଜାତି ପ୍ରତି ଦେବତା-ଜ୍ଞାନ ରଖନ୍ତି । କାରଣ ଭାଗବତରେ ଲିଖିତ ଅଛି ଯେ—

ବିପ୍ରା ଗାବାଶ୍ଚ ବେଦାଶ୍ଚ
ତ୍ତବଶ୍ଚ ହରେ ସ୍ତନଃ ।

ଅର୍ଥାତ—ବ୍ରାହ୍ମଣ, ଗୋ, ଯଜ୍ଞ ଏସବୁ ହରିଙ୍କ ଶରୀର ଅଟନ୍ତି । ପ୍ରିୟ ପାଠକ ! ଏପରି ଶାସ୍ତ୍ରବଚନର ବିଦ୍ୟମାନତାରେ ଏବଂ ଗୋ-ଜାତିର ଅତ୍ୟନ୍ତ ଉପକାରିତା ଦର୍ଶନରେ କ ସେହି ଗୋ-ଜାତି ପ୍ରତି ପଶୁଜ୍ଞାନ ରଖିବା ଉଚିତ ? ଗୋ-ଜାତି ଯେ ପଶୁ ନୁହେଁ—ପଶୁରୂପୀ ଦେବତା ସମଷ୍ଟି, ତାହା ନିମ୍ନୋକ୍ତ ସ୍ମୃତିବାକ୍ୟରୁ ସୁସ୍ପଷ୍ଟ ପ୍ରତିପନ୍ନ ହେଉଅଛି—

ପୃଷ୍ଠେବ୍ରହ୍ମା ଗଳେ ବିଷ୍ଣୁର୍ମୁଖେ ରୁଦ୍ରଃ ପ୍ରତିଷ୍ଠିତଃ
ମଧ୍ୟେ ଦେବଗଣାଃ ସର୍ବେ ରୋମକୂପେ ମହର୍ଷୟଃ

ନାଗପୃଚ୍ଛେ ଖୁରାଗ୍ରେଷୁ ଯେଷ୍ୱଷ୍ଟୌ କୁଳ ପର୍ବତାଃ
ମୂତ୍ରେ ଗଙ୍ଗାଦୟୋ ନଦ୍ୟୋ ନେତ୍ରୟୋଃ ଶଶିଭାସ୍କରୌ
ଏତେ ଯସ୍ୟାସ୍ତନୌ ଦେବା ସା ଧେନୁ ବରଦାସ୍ତୁମେ ।

ଏଥିଉତ୍ତାରୁ ଯେବେ କେହ ଗୋ-ଜାତି ପ୍ରତି ପଶୁଜ୍ଞାନ କରେ, ତାହାକୁ ମନୁଷ୍ୟ ନ କହି ମନୁଷ୍ୟାକାର ପଶୁ କହିବାରେ ଆପତ୍ତି କି ? ଗଭୀର ଦୁଃଖର ବିଷୟ ଯେ ଆମ୍ଭମାନଙ୍କର ଅଶେଷ ଉପକାରୀ ଏବଂ ଆରାଧ୍ୟତମ ଗୋ-ଜାତି ଆମ୍ଭମାନଙ୍କର ଅଯତ୍ନରୁ ଆଜି ନିତାନ୍ତ ଶୋଚନୀୟ ଦଶାକୁ ଲଭିଅଛି । ଲୋକମାନେ ଏ କଥା ଜାଣିପାରୁ ନାହାନ୍ତି ଯେ ଚନ୍ଦ୍ର, ସୂର୍ଯ୍ୟ, ଜଳ, ବାୟୁ ପରି ଗୋ-ଜାତି ଆମ୍ଭମାନଙ୍କର ଏକାନ୍ତ ଆବଶ୍ୟକୀୟ ଜୀବ ଏବଂ କେବଳ ଗୋ-ଜାତି ପ୍ରସାଦରୁ ନବାବର ନବାବୀ, ରାଜାର ରାଜଗୀ ଏବଂ ଏହି ଗୋ-ଜାତିର ପ୍ରସାଦରୁ ଆମ୍ଭମାନଙ୍କର ଯାବତୀୟ ଲୀଳାଖେଳା ସମ୍ପାଦିତ ହେଉଅଛି । ଏପରି କଲ୍ୟାଣପ୍ରଦ ଗୋ-ଜାତିର ସୁଖ ସୁବିଧାର ଚେଷ୍ଟା କରିବା କି ଆମ୍ଭମାନଙ୍କର ପ୍ରଧାନତମ କର୍ତ୍ତବ୍ୟ ନୁହଇଁ ? ଆଜି କେତେଜଣ ଲୋକ ଏହି କର୍ତ୍ତବ୍ୟ ପାଳନ କରୁଅଛନ୍ତି ? ଆମ୍ଭମାନଙ୍କର ଅବହେଳା ଏବଂ ଅମନଯୋଗରୁ ଗୋ-ଜାତି ହାଡ଼ଭଙ୍ଗା ପରିଶ୍ରମ କରି ମଧ୍ୟ ଉପଯୁକ୍ତ ଖାଦ୍ୟ ନ ପାଇ ଦିନକୁଦିନ କ୍ଷୀଣବଳ ହେଉଅଛନ୍ତି । ଗୋ-ଜାତି ମାନେ ଆଜି ବିକଳାଙ୍ଗ, ଅସ୍ଥିଚର୍ମସାର । ଗୋ-ଜାତିର କି ଖାଇବାର, କି ଶୋଇବାର, କି ପିଇବାର, କି ଚିକିତ୍ସିତ ହେବାର କୌଣସି ବିଷୟରେ ସୁବନ୍ଦୋବସ୍ତ ନାହିଁ । ଏ ସବୁ କରିବା କି କର୍ତ୍ତବ୍ୟ ? ଗୋ-ଜାତିକୁ ଦେବତାଜ୍ଞାନ ନ କଲେ ଉପକାରୀ ଜୀବ ବୋଲିତ ଅବଶ୍ୟ ସ୍ୱୀକାର କରିବାକୁ ହେବ ? ତେବେ ଉପକାରୀ ଜୀବର ପ୍ରତ୍ୟୁପକାର ସାଧନ କରିବା ତ ଉଚିତ ? ଏଥିରେ ଅନ୍ୟଥା କଲେ ଆମ୍ଭେମାନେ ଦୋଷଭାଗୀ ହେବା ନାହିଁ ? ଗୋ-ଜାତିକୁ ଉପକାରୀ ଜୀବ ବୋଲି ଯେବେ ସ୍ୱୀକାର କର, ତେବେ ସେମାନଙ୍କର ପ୍ରତ୍ୟୁପକାର ସାଧନରେ ପ୍ରତ୍ୟେକ ବ୍ୟକ୍ତି ଅଗ୍ରସର ହୁଅ ଏବଂ 'ପରୋପକାରାୟ ପୁଣ୍ୟାୟ !' ପୁଣି 'ପରୋପକାରାୟ ସତାଂ ବିଭୂତୟଃ' ବାକ୍ୟଦ୍ୱୟ ସତତ ସ୍ମରଣ ରଖ ।

ଅମ୍ଭେମାନେ ପବିତ୍ର ହିନ୍ଦୁ ଧର୍ମାବଲମ୍ବୀ—ହିନ୍ଦୁ ସନ୍ତାନ ଏବଂ ଆମ୍ଭେମାନେ ସ୍ୱୟଂ ହିନ୍ଦୁ । ଅତଏବ ଆମ୍ଭମାନଙ୍କର ହିନ୍ଦୁଶାସ୍ତ୍ର ଅବମାନନା କରିବା କଦାପି ଉଚିତ ନୁହେ । ସେହି ହିନ୍ଦୁଶାସ୍ତ୍ର ଯତ୍ନରେ ଗୋ-ରକ୍ଷା କରିବା ସକାଶେ ଆମ୍ଭମାନଙ୍କୁ ଯେଉଁ ଉପଦେଶ ଦେଉଅଛି, ତାହା ଆଦରର ସହିତ ପାଳନ କରିବା ସର୍ବତୋଭାବରେ କର୍ତ୍ତବ୍ୟ ଅଟେ । ଯେଉଁମାନେ ଶାସ୍ତ୍ରବଚନ

ଅବହେଳଣ କରି ଗୋ-ପାଳନ ବିଷୟରେ ବିମୁଖ ହୁଅନ୍ତି, ସେମାନେ ଗୋ-ହତ୍ୟା ପାପର ଭାଗୀ ହୋଇ ନରକରେ ପତିତ ହୁଅନ୍ତି, ଏ ସମ୍ବନ୍ଧରେ ଶିବପୁରାଣରେ ଲିଖିତ ଅଛି ଯେ—

ଯେ ଭାରବାନ୍ତ ରୋଗାର୍ତ୍ତାନ୍
ଗୋବୃଷାଂଶ୍ଚ କ୍ଷୁଧାତୁରାନ୍
ନ ପାଳୟନ୍ତି ଯତ୍ନେନ
ଗୋଘ୍ନାସ୍ତେ ନାରକାଃ ସ୍ମୃତାଃ ।

ଏହା ବିଧବାର ଏକାଦଶୀ ନୁହେଁ ଯେ କରଣେ ଫଳାଭାବ ଅକରଣେ ପ୍ରତ୍ୟବାୟ ହେବ । ଗୋ-ରକ୍ଷା ନ କଲେ ଯେପରି ପାପ ହୁଏ, କଲେ ସେହିପରି ପୁଣ୍ୟ ଓ ବାଞ୍ଛିତ ଫଳ ଲାଭ ହୁଅଇ । ଅତଏବ କି ବାଳକ ବାଳିକା, କି ବୃଦ୍ଧ ବୃଦ୍ଧା, କି ରୋଗୀ, କି ଉପବାସୀ ସମସ୍ତଙ୍କର ଶକ୍ତି ଅନୁସାରେ ଗୋ-ସେବା କରିବା ଉଚିତ । ଅଙ୍ଗସୂତ୍ରରେ ଲିଖିତ ଅଛି ଯେ "ବାଳ ବୃଦ୍ଧା ରୋଗାର୍ତ୍ତାଃ ଶ୍ରାନ୍ତା ଉପାସିତ୍ତ ଶକ୍ତିତଃ ପ୍ରତୀକାରଂ କୁର୍ଯ୍ୟାନ୍ତୁ ଗବାଂ ଏଷ ଧର୍ମଃ ଅନ୍ୟଥା ବିପ୍ଲବଃ । ଗୋ-ଜାତିର ସେବା କଲେ ଯେ ବାଞ୍ଛିତ ଫଳ ଲାଭ ହୁଅଇ, ଏହା ଆମ୍ଭମାନଙ୍କର ମନଗଢ଼ା କଥା ନୁହଇ । ପିତାମହ ଭୀଷ୍ମ, ଯୁଧିଷ୍ଠିରଙ୍କୁ କହିଥିଲେ ଯେ—

ଗାଶ୍ଚ ଶୁଶ୍ରୂଷତେ ଯଶ୍ଚ ସମଂ ବେଭିଚସର୍ବଶଃ
ତସ୍ମୈ ତୁଷ୍ଟାଃ ପ୍ରଯଚ୍ଛନ୍ତି ବରାନପି ସୁଦୁର୍ଲଭାନ୍ ।

ଏହି ଗୋ-ସେବା କରି ସୂର୍ଯ୍ୟବଂଶାବତଂସ ମହାରାଜ ଦିଲୀପ ଭୁବନ ବିଖ୍ୟାତ ପୁତ୍ର ରତ୍ନ ଲାଭ କରିଥିବା କଥା କିଏ ନ ଜାଣେ ? ଶିବପୁରାଣରେ ଲିଖିତ ଅଛି ଯେ ଯେଉଁ ଜାତି ଶ୍ରଦ୍ଧା ପୂର୍ବକ ଗୋ-ସେବା କରେ, ସେ ଅଗ୍ନିଲୋକକୁ ଯାଇ ଉତ୍ତମ ସ୍ଥାନ ଲାଭ କରେ ।

ଗୋରୁମାନଙ୍କୁ କେହି ସଗ୍ରଦ୍ଧ ଚିତ୍ତରେ ଖାଦ୍ୟ ପ୍ରଦାନ କଲେ ସେ ବ୍ୟକ୍ତି ସ୍ୱର୍ଗ ଲାଭର ଅଧିକାରୀ ହୁଅଇ । ପ୍ରମାଣ ଯଥା—

"ଗବାଂ ଗ୍ରାସ ପ୍ରଦାନେନ ସ୍ୱର୍ଗ ଲୋକେ ମହୀୟତେ"
ଭବିଷ୍ୟ ପୁରାଣରେ ଲିଖିତ ଅଛି ଯେ—

'ତୃଣୋଦକେନ ସଂଯୁକ୍ତଂ ଯଃ ପ୍ରଦଦ୍ୟାଜ୍ଜଗବାହ୍ନିକଂ
କପିଳାୟ ତଦାନସ୍ୟ ଫଳଂ ବଦେ ନୃପଶସ୍ତୁଃ ।

ପୁଣି ଯେଉଁମାନେ ପରର ଗୋରୁକୁ ଶ୍ରଦ୍ଧା ସହ ଉଣା ଅଧିକରେ କିଛି ଖାଦ୍ୟ ପ୍ରଦାନ କରନ୍ତି ସେ ଦନେ ସ୍ୱର୍ଗ ଲାଭର ଅଧିକାରୀ ହେବା ସମ୍ବନ୍ଧେ ମହାଭାରତରେ ଲିଖିତ ଅଛି ଯେ—

ଘାସମୁଷ୍ଟିଂ ପରଗବେ ସାନ୍ତ୍ୱଂ ଦଦ୍ୟାତ୍ତୁ ଯଃ ସଦା ।
ଅକୃତ୍ୱା ସ୍ୱୟମାହାରଂ ସ୍ୱର୍ଗଲୋକଂ ସ ଗଚ୍ଛତି ।

ଯେଉଁମାନେ ପରର ଗୋରୁକୁ ଖାଦ୍ୟ ପ୍ରଦାନ କରନ୍ତି, ଅଥବା ସିଂହ ବ୍ୟାଘ୍ର ଭୟରେ ଭୀତ କିମ୍ବା ପଙ୍କଲଗ୍ନ ଗୋରୁକୁ ରକ୍ଷା ବା ଉଦ୍ଧାର କରନ୍ତି ସେମାନେ ଅନନ୍ତ ପୁଣ୍ୟର ଅଧିକାରୀ ହୁଅନ୍ତି, ଏ ସମ୍ବନ୍ଧେ ପ୍ରମାଣ ଯଥା—

ଦତ୍ତ୍ୱା ପରଗବେ ଗ୍ରାସ ପୁଣ୍ୟଂ ସମହଦଶ୍ନୁତେ
ସିଂହ ବ୍ୟାଘ୍ର ଭୟତ୍ରସ୍ତାଂ ପଙ୍କଲଗ୍ନା ଜଲେ ଗତାଂ ।

ବ୍ରହ୍ମପୁରାଣରେ ଲିଖିତ ଅଛି ଯେ—

ଅନାଥାନାଂ ଗଚ୍ଛାଂ ଯତ୍ନାତ୍ କାର୍ଯ୍ୟସ୍ତୁ ଶିଶିରେମଠଃ
ପୁଣ୍ୟାର୍ଥଂ ଯଜଦାସ୍ୟନ୍ତେ ତୃଣତୋୟେନ୍ଧନାନିଚ
ଏବଂ କୃତେ ମହୀଂ ପୂର୍ଣ୍ଣାଂ ରତ୍ନୈର୍ଦତ୍ତ୍ୱା ଫଳଂ ଲଭେତ୍
ଗୋ ପ୍ରଦାନେନ ଯତ୍ ପୁଣ୍ୟଂ ଗବାଂ ସଂରକ୍ଷଣଂତ ଭବେତ୍ ।

ଅନାଥ ଗୋରୁମାନଙ୍କୁ ଶୀତରୁ ରକ୍ଷା କରିବା ନିମନ୍ତେ ଯେଉଁମାନେ ଗୃହ ପ୍ରସ୍ତୁତ କରି ଦଅନ୍ତି, ଯେଉଁମାନେ ଘାସ ପାଣି ପ୍ରଭୃତି ଖାଦ୍ୟ ପ୍ରଦାନ କରନ୍ତି, ଯେଉଁମାନେ କାଷ୍ଠ ସାହାଯ୍ୟ କରନ୍ତି, ସେମାନେ ପ୍ରତ୍ୟେକେ ରତ୍ନପୂର୍ଣ୍ଣ ପୃଥ୍ୱୀ ଦାନର ଫଳ ଲାଭ କରନ୍ତି ଏବଂ ଗୋ-ସେବା ବଶତଃ ଗୋ-ଦାନର ପୁଣ୍ୟ ମଧ୍ୟ ଲାଭ କରନ୍ତି । ମହାଭାରତରେ ଲିଖିତ ଅଛି ଯେ—

କୃତ୍ୱା ଗବାର୍ଥେ ଶରଣଂ ଶୀତ ବାତ କ୍ଷମଂ ମହତ୍
ଆସପ୍ତମଂ ତାରୟତି କୁଳଂ ଭରତ ସତ୍ତମ ।

ହେ ଭରତ ! ଶୀତବାତରୁ ଗୋ-ରକ୍ଷା କରିବା ନିମନ୍ତେ ଯେଉଁମାନେ ଗୋ-ଶାଳା ପ୍ରସ୍ତୁତ କରିଦଅନ୍ତି, ସେମାନେ ଆପଣାର ସପ୍ତପୁରୁଷଙ୍କୁ ଉଦ୍ଧାର କରନ୍ତି ।

ଯେଉଁ ଗୋ-ଜାତିର ସ୍ଥିତିରେ ଆମ୍ଭେମାନେ ବିବିଧ ଉପକାର ପାଉଅଛୁ, ଯେଉଁ ଗୋ-କୁ ଦାନ କଲେ ଏବଂ ଯେଉଁ ଗୋ-ର ସେବା କଲେ, ଏତେ ପୁଣ୍ୟ,

ସେହି ଗୋରୁ ଜାତି ଆଜି ପେଟକୁ ଦାନା ପାଇବାକୁ ନାହିଁ । ସେହି ଗୋ ଜାତିର ଦୁଃଖ କେହି ଆଜି ଫିଟାଇ ଦେଖିବାକୁ ନାହିଁ । ଲୋକମାନଙ୍କର ଅତି ଲୋଭ ଏବଂ ଅବହେଳାରୁ ଗୋଚର, ଗୋ ଦାଣ୍ଡ ଆଜି ଶସ୍ୟ କ୍ଷେତ୍ରରେ ପରିଣତ । ଯାହା ଯୋଗେ ଶସ୍ୟ ଲାଭ, ଯାହା ଯୋଗେ ଜୀବନଧାରଣ, ତାହାର ଅପକାର ସାଧନ ଆଜି ଅମ୍ଭମାନଙ୍କର ଜୀବନର ବ୍ରତ ।

ଏକଥା ସ୍ମରଣ କଲେ କେଉଁ ହୃଦୟବାନ ବ୍ୟକ୍ତି ଅଶ୍ରୁ ସମ୍ବରଣ ନ କରି ରହି ପାରିବ ? ଏହି କାରଣରୁ ଯେ ଅମ୍ଭେମାନେ ଲକ୍ଷ୍ମୀଛଡ଼ା ହୋଇ ଦିନକୁ ଦିନ ଦୁର୍ଦ୍ଦଶା ଗ୍ରସ୍ତ ହେଉଅଛୁଁ, ଏହାକି କେହି ଭାବି ଦେଖୁ ଅଛନ୍ତି ? ବ୍ରହ୍ମବୈବର୍ତ୍ତ ପୁରାଣରେ ସ୍ପଷ୍ଟାକ୍ଷରରେ ଲିଖିତ ଅଛି ଯେ—

ଗୋ ମାର୍ଗ ଖନନଂ କୃତ୍ୱା ଶସ୍ୟମେବ ଦଦାତି ଯଃ
ତଡ଼ାଗେବା ତ ଦୁର୍ଦ୍ଦେବା ସ ଗୋହତ୍ୟାଂ ଲଭେଦ୍ଧ୍ରୁବଂ
ତତ୍ପୁତ୍ରପୌତ୍ର ପ୍ରଭୃତି ଭୂମିସ୍ୱାନ ଶ୍ରୀସ୍ୱାହତଃ
ପୁତ୍ରସ୍ୱନୋଦରିଦ୍ରାଣ୍ଟ ସୋଽପିଯା ସ୍ୱତରୌରବଂ ।

ଏପରି ଅମଙ୍ଗଳ ବିଧାୟକ କାର୍ଯ୍ୟରେ ଆମ୍ଭମାନଙ୍କର ଆଉ ଅଗ୍ରସର ହେବା ଉଚିତ ନୁହଇ । ଗ୍ରାମେ ଗ୍ରାମେ ବିସ୍ତୃତ ଗୋ-ଚାରଣ ଭୂମି ରହିବା ବିଷୟରେ ଯେପରି ବିହିତ ବିଧାନ ହୁଏ, ତାହା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଶିବ କହିଅଛନ୍ତି । "ଯେଉଁମାନେ ଗୋ, ବ୍ରାହ୍ମଣ, କନ୍ୟା, ସ୍ୱାମୀ, ମିତ୍ର, ତପସ୍ୱୀ-ମାନଙ୍କ କାର୍ଯ୍ୟରେ ହେଳା କରନ୍ତି ବା ବାଧା ଦିଅନ୍ତି, ସେମାନେ ନରକରେ ପତିତ ହୁଅନ୍ତି ।" ତଦ୍ ଯଥା—

ଯେ ଗୋ ବ୍ରାହ୍ମଣ କନ୍ୟାନାଂ ସ୍ୱାମୀମିତ୍ରତପସ୍ୱିନାଂ
ବିନାଶୟନ୍ତି କାର୍ଯ୍ୟାଣି ତେନରାଃ ନାରକାସ୍ମୃତାଃ ।

ଅତଏବ ଗୋ-ରକ୍ଷା ସମ୍ବନ୍ଧୀୟ ମଙ୍ଗଳକର ପ୍ରସ୍ତାବରେ ବାଧାବିଘ୍ନ ଉପସ୍ଥିତ ନ କରି ପ୍ରତ୍ୟେକ ବ୍ୟକ୍ତିର ଅଗ୍ରସର ହେବା ଉଚିତ ।

ଶରୀରଂ ବା ପାତୟେତ୍
କାର୍ଯ୍ୟଂ ବା ସାଧୟେତ୍ ।

ଏହି ମହାମୂଲ୍ୟବାନ ଉକ୍ତି ସମସ୍ତଙ୍କର ମୂଳମନ୍ତ୍ର ହେବା ଉଚିତ । କୌଣସି କାର୍ଯ୍ୟ କରିବାକୁ ହେଲେ ଅଗ୍ରେ ଆତ୍ମୋତ୍ସର୍ଗ ଆବଶ୍ୟକ । ଗୋରକ୍ଷା ନିମନ୍ତେ

ଜଳଷ୍ଫୋଟକ ତୁଲ୍ୟ କ୍ଷଣସ୍ଥାୟୀ ଏ ଶରୀରର ଧ୍ୱଂସ ହେଲେ ମଧ୍ୟ କ୍ଷତି ନାହିଁ । ଏହା ବଦଳରେ ଆମ୍ଭେମାନେ ଦେବ୍ୟତନୁ ଲାଭ କରି ଗୋ-ପ୍ରସାଦର ସ୍ୱର୍ଗ ସୁଖ ଲାଭ କରିବାକୁ ସକ୍ଷମ ହେବୁଁ । ଯେଉଁ ପାପ ସ୍ୱର୍ଗ ସୁଖ ପ୍ରାପ୍ତିର ପ୍ରତିବନ୍ଧକ, ସେହି ପାପରାଶି ଧ୍ୱଂସ ହେଲେ ସ୍ୱର୍ଗପ୍ରାପ୍ତିରେ ଆଉ ବାଧା ରହିଇ ନାହିଁ । ଗୋ-ରକ୍ଷା କାର୍ଯ୍ୟରେ ଯେଉଁମାନେ ଜୀବନ ତ୍ୟାଗ କରନ୍ତି, ସେମାନେ ବ୍ରହ୍ମହତ୍ୟାଦି ଗୁରୁତର ପାପରେ ଲିପ୍ତ ଥିଲେ ମଧ୍ୟ ପାପ ମୁକ୍ତ ହୁଅନ୍ତି । ଏ ସମ୍ବନ୍ଧେ ମହର୍ଷି ମୁନି କହିଅଛନ୍ତି—

ବ୍ରାହ୍ମଣାର୍ଥେ ଗବାର୍ଥେ ବା ସଦ୍ୟଃ ପ୍ରାଣାନ୍ ପରିତ୍ୟଜେତ୍
ମୁଚ୍ୟତେ ବ୍ରହ୍ମହତ୍ୟାୟା ଗୋପ୍ତାଗୋ ବ୍ରାହ୍ମଣସ୍ୟ ଚ ।

ଅଜି ଲୋକମାନେ ଗୋରକ୍ଷା ସକାଶେ ଶରୀରପାତ କରିବା ତ ଦୂରର କଥା, କେହି ସେ ସକାଶେ ସାମାନ୍ୟ ପରିମାଣରେ ଯତ୍ନ ସୁଦ୍ଧା କରିବାକୁ ନାହିଁ, ପଦେ କଥା ମଧ୍ୟ କହିବାକୁ ନାହିଁ, ଅମ୍ଭମାନଙ୍କର ଏହି କର୍ତ୍ତବ୍ୟହୀନତା ହେତୁ ପବିତ୍ରତମ ଭାରତଭୂମି ଗୋ-ରକ୍ତରେ କ୍ରମଶଃ ଗାଢ଼ ଲୋହିତ ହେଉଅଛି । ଦୁଇଟି ଗୋଟିଏ ନୁହେଁ—ପ୍ରତିବର୍ଷ ଏ ଭାରତରେ ନ୍ୟୂନାଧିକ ୫୦ ସହସ୍ର ଗୋ-ବଧ ହେଉଅଛନ୍ତି । ଲୋକମାନେ ଧନ ଲୋଭରେ ଗୋଖାଦକମାନଙ୍କ ହସ୍ତରେ ଗୋବିକ୍ରୟ କରି ବଧ ପାପରେ ଭାଗୀ ହେଉଅଛନ୍ତି । ଗବାଧିକାରୀ ଗୋଖାଦକ ହସ୍ତରେ ଗୋ-ସମର୍ପଣ କଲେ ସେ ବଧ ପାପରେ ଲିପ୍ତ ହେଉଥିବା କଥା ପରାଶର ସଂହିତାରେ ଲିଖିତ ଅଛି । ଯଥା—

ଗବାଶନେଭ୍ୟୋ ବିକ୍ରୀଣ ସ୍ତତଃ ପ୍ରାପ୍ନୋତି ଗୋବଧଂ ।

ପୁନଶ୍ଚ 'ବିଷ୍ଣୁଧର୍ମୋତ୍ତରରେ' ବଶିଷ୍ଠ, ଏ ସମ୍ବନ୍ଧେ ଭଗବାନ୍ ରାମଚନ୍ଦ୍ରଙ୍କୁ କହିଅଛନ୍ତି—

'ବିକ୍ରୟାଞ୍ଚ ଗବାଂ ରାମା ନରକଂ ପ୍ରତିପଦ୍ୟତେ ।

ଏପରିସ୍ଥଳେ ଅମ୍ଭମାନଙ୍କର କି ଗୋ ଖାଦକ ହସ୍ତରେ ଗୋ-ବିକ୍ରୟ କରିବା ଉଚିତ ? ଏପରି ଗୋବିକ୍ରେତାମାନଙ୍କୁ ସମାଜରେ ଗ୍ରହଣ କରିବା ଦ୍ୱାରା କି ସମାଜର ପବିତ୍ରତା ନଷ୍ଟ ହେଉନାହିଁ ? ଅତଏବ ଯେଉଁ ବ୍ୟକ୍ତି ଗୋ-ଖାଦକ ହସ୍ତରେ ଗୋ-ବିକ୍ରୟ କରିବ, ତାକୁ ସମାଜଚ୍ୟୁତ କରିବା ସକାଶେ ପ୍ରତ୍ୟେକ

ବ୍ୟକ୍ତିର ଦୃଢ଼ପ୍ରତିଜ୍ଞ ହେବା ଉଚିତ । ନାଗପୁରର କୋଷ୍ଟାମାନେ, ସ୍ୱଜନାହଗାଁ ପ୍ରଭୃତି ସ୍ଥାନର ନାପିତମାନେ ଏହିପରି ଦୃଢ଼ପ୍ରତିଜ୍ଞ ହୋଇଅଛନ୍ତି, ଆମ୍ଭମାନଙ୍କର ଏଥିର ଅନୁକରଣ କରିବା ଉଚିତ ।

ମଧ୍ୟପ୍ରଦେଶ, ବୋମ୍ବାଇ, ଉତ୍ତରପଶ୍ଚିମ ପ୍ରଦେଶର କେତେକ ହୃଦୟବାନ୍ ପରିଣାମଦର୍ଶୀ ଲୋକ ସ୍ଥାନେ ସ୍ଥାନେ ମିଳିତ ହୋଇ ଗୋ-ଦୁର୍ଦ୍ଦଶା ଦୂରୀକରଣ କାର୍ଯ୍ୟରେ ଅଗ୍ରସର ହୋଇଅଛନ୍ତି, ସ୍ଥାନେ ସ୍ଥାନେ ଗୋ-ରକ୍ଷିଣୀ ସଭା ସ୍ଥାପିତ ହୋଇଅଛି—ହେଉଅଛି । ସଭାର ଅଧୀନରେ ଗୋ-ଶାଳା ପ୍ରତିଷ୍ଠିତ ହୋଇ ରୁଗ୍ଣ ଅକର୍ମଣ୍ୟ, ଗୋ-ପାଳିତ ହେଉଅଛନ୍ତି । କେତେକ ଗୋ-ରକ୍ଷିଣୀ ସମିତିରୁ ଗୋ-ରକ୍ଷା ସମ୍ବନ୍ଧୀୟ ସମ୍ବାଦ ଓ ଉପଦେଶପୂର୍ଣ୍ଣ ପୁସ୍ତକ, ପତ୍ରିକା ପ୍ରକାଶିତ ହେଉଅଛି । ମାତ୍ର ଏ ଉତ୍କଳ ଦେଶରେ ଗୋ-ରକ୍ଷା ସମ୍ବନ୍ଧେ କୌଣସି ବିଶେଷ ଚେଷ୍ଟା ହେବାର ଦେଖିବାକୁ ପାଉନାହୁଁ । ଯେପରିକି ଏ ଦେଶର ଗୋରୁମାନେ ପରମସୁଖରେ କାଳହରଣ କରୁଅଛନ୍ତି । ଲୋକମାନଙ୍କର ଉଦାସିନତା ଦୃଷ୍ଟେ ସ୍ୱଭାବତଃ ମନରେ ଏହି ଭାବ ଉଦିତ ହୁଏ ସତ୍ୟ କିନ୍ତୁ ପ୍ରକୃତରେ ଏ ଦେଶୀ ଗୋରୁମାନଙ୍କର ଲେଶମାତ୍ର ସୁଖ ନାହିଁ । ଏକଥା ଦୃଢ଼ରୂପେ ବୋଲଯାଇପାରେ । ଉତ୍କଳୀୟ ଭ୍ରାତାମାନଙ୍କର ଆଉ ଏ ବିଷୟରେ ଉଦାସୀନ ରହିବା ଉଚିତ ନୁହଇ । ଉତ୍କଳର ସ୍ଥାନେ ସ୍ଥାନେ ଗୋ-ରକ୍ଷିଣୀସଭା ସ୍ଥାପିତ ହୋଇ ଗୋ-ରକ୍ଷା କଲେ, ଅକର୍ମଣ୍ୟ ପଶୁମାନେ ରକ୍ଷିତ ଓ ପ୍ରତିପାଳିତ ହେବାର ବିଧାନ ହେଉ, ତାହାହେଲେ କ୍ରମରେ ଗୋ-ଦୁର୍ଦ୍ଦଶା ଦୂରୀଭୂତ ହୋଇ ଗୋ-ଜାତିର ବାଞ୍ଛିତ ଉନ୍ନତି ହୋଇ ପାରିବ । 'ଗୋ-ବିଳାପ' ପ୍ରଣେତା ଯଥାର୍ଥ କହିଅଛନ୍ତି—

"ବେଲଥାଉ ସାବଧାନ ହୁଅ ସର୍ବ ନର
ଗୋ ହିତ ନିମନ୍ତେ ଯଥା-ସାଧ୍ୟ ଯତ୍ନ କର ।
ସେବାରେ ସନ୍ତୁଷ୍ଟ ତାଙ୍କୁ ଯେବେ କରିପାର
ଉଦବ ଭାରତକାଣେ ସୁଖ ଦିବାକର ।
ଇତରତ ହୋଇ ତମ ଦେଶୁ ପଳାଇବ
ସମସ୍ତଙ୍କ ମୁଖପଦ୍ମ ସରସ ଦିଶିବ ।

ଯେବେ ଧମନୀରେ ଥିବ ଆର୍ଯ୍ୟର ଶୋଣିତ
ହୃଦୟେ କରୁଣା ଯେବେ ଥିବଟି କଳ୍ପିତ ।

ଇଚ୍ଛ ଯେବେ ହିନ୍ଦୁ ନାମେ ହେବାକୁ ଚିହ୍ନିତ
ହିନ୍ଦୁ ଶାସ୍ତ୍ର ଆସ୍ଥା ଯେବେ ଅଛୁଟି କଳ୍ପିତ ।

ଉପକାରୀ ଉପକାର ଯେବେ ଅଟେ ସତ
ଦୀନ-ଦୁଃଖ ଦୂର ଯେବେ ଜାଣ ଆର୍ଯ୍ୟ ମତ ।

ପୈତୃକ ସ୍ୱତ୍ୱ ରକ୍ଷଣେ ଯଦ୍ୱ ଅଛୁ ଚିତ୍ତ
ପରଦୁଃଖେ ଚିତ୍ତ ଯେବେ ହୁଅଇ ବ୍ୟଥିତ ।

ତେବେ ଗୋ-ଦୁଃଖ ହରଣେ ସର୍ବେ ସାଧ୍ୟମତ
ଯତ୍ନ ଶ୍ରମ ଦାନକର ନୁହଁ ସଙ୍କୁଚିତ ।

———

# କର୍ମଯୋଗୀ ନୀଳମଣି

ରବିନାରାୟଣ ମହାପାତ୍ର

( ୧୪ । ୧୨ । ୧୮୬୭, — ୨୭ । ୭ ।୧୯୨୩ )

‘‘ମୋହର ବଚନ ଶୁଣ ନୀଳମଣି ନନା,
ହିତୈଷିଣୀ ଲେଖିବାକୁ ନ କରିବ ମନା ।

ଏକ କାର୍ଯ୍ୟେ କରି ଲଭ ପାଇବ ସକଳ
ଯଶ ଅର୍ଥ ବିଦ୍ୟାନାମ ଚତୁଃବର୍ଗ ଫଳ ।

ତୁମ୍ଭ କଥା ଥରେଥର ପକାଏ ମୁଁ ମନେ,
ଅଟ ଏକା ‘ସେଲଫ୍-ମେଡ୍‌ ମ୍ୟାନ୍’ ତୁମ୍ଭେ ଜଣେ ।

ଜାଗାଶିରେ ଧରି ଏକା ପଡ଼ିଅଛୁ ନନା
ପରଶମଣିକୁ ଛୁଇଁ ଲୁହା ହୁଏ ସୁନା ।’’

—ବ୍ୟାସକବି ଫକୀରମୋହନ

‘‘ଆହେ ନୀଳମଣି ଉତ୍କଳମଣି
ଅକାଳରେ ଗଲ ଏ ଭବ ତେଜି,

ତୁମ୍ଭ କାର୍ଯ୍ୟକାଳ ତୁମ୍ଭ ଗୁଣ ଗୁଣି
ବ୍ୟାକୁଳ ହେଉଛୁ ତୁମ୍ଭକୁ ହେଜି ।’’

—ପଲ୍ଲୀକବି ନନ୍ଦକିଶୋର

‘‘ଯାବତ ଉତ୍କଳେଥିବ ବାଣୀ ନିକେତନ
ତାବତ ରହିବ ତୁମ୍ଭ କୀରତି-କେତନ’’

—ସ୍ୱଭାବକବି ଗଙ୍ଗାଧର

"ଅତିଥି ମାନଙ୍କ ପାଇଁ ମେଲ ତୁମ୍ଭ ଦ୍ୱାର
ଯାଚ ଗୁଞ୍ଜି ଭୁଲି କର ପର ଉପକାର ।

ଦେଖିବି ମୁଁ ପର ପାଇଁ କାନ୍ଦେ ତୁମ ହୃଦ
ଅପରକୁ ଦିଅ ଦୁଧ ଖାଇ କୁଣ୍ଡାଖୁଦ ।"

—କବିଶେଖର ଚିନ୍ତାମଣି

ଏହିପରି ଭାବରେ ନଅଙ୍କ-ପରବର୍ତ୍ତୀ ଅଧୁନାତନ ଓଡ଼ିଶାରେ ନବଜାଗରଣ ପାଇଁ ଏବଂ ପରିବର୍ତ୍ତିତ ପରିବେଶରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ସ୍ୱ ସ୍ୱ କ୍ଷେତ୍ରରେ ଯଥାସାଧ୍ୟ ଉଦ୍ୟମ କରିଥିବା ବରପୁତ୍ରମାନେ ଅବିଭକ୍ତ କଟକ ଜିଲ୍ଲାର ବାଙ୍କୀ-ବୈଦ୍ୟେଶ୍ୱର ଗ୍ରାମର ରକ୍ଷଣଶୀଳ ଶାସନୀବ୍ରାହ୍ମଣ ବହୁକୁଟୁମ୍ବୀ ଗୌରୀଚରଣ ମିଶ୍ର ଏବଂ ରୋହିଣୀ ଦେବୀଙ୍କର ପୁତ୍ର ନୀଳମଣିଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି । ତାଙ୍କର ପାରିବାରିକ ବୃତ୍ତି ଥିଲା କର୍ମକାଣ୍ଡରୁ ଯତ୍‌କିଞ୍ଚିତ୍ ରୋଜଗାର । ଦାରିଦ୍ର୍ୟ ସେହି ପରିବାରକୁ ବିଶେଷତଃ ନୀଳମଣିଙ୍କୁ ମହାନ୍ କରିଥିଲା । ଦୁଃଖଦୈନ୍ୟ ମଧ୍ୟରେ ନୀଳମଣି ବୈଦ୍ୟେଶ୍ୱର ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରି ବୃତ୍ତି ପରୀକ୍ଷାରେ କୃତିତ୍ୱ ପାଇଁ ମାସକୁ ତିନିଟଙ୍କା ସରକାରୀ ବୃତ୍ତି ପାଇଥିଲେ ।

ସେହି ବୃତ୍ତିରେ ସେ ଚର୍ଚ୍ଚିକା ମଧ୍ୟ-ଓଡ଼ିଆ ବିଦ୍ୟାଳୟରେ ପଢ଼ିଲେ ଏବଂ ଅବସରରେ କେବେ ହାତପତାଇ କାହାକୁ ପଇସାଟିଏ ମଧ୍ୟ ମାଗି ନାହାନ୍ତି । ସୁନ୍ଦର ହସ୍ତାକ୍ଷର ପାଇଁ ଚର୍ଚ୍ଚିକା ସବ୍‌ରେଜିଷ୍ଟ୍ରାର ଅଫିସର ମୋହରିରମାନଙ୍କର ଦଲିଲ, ଦସ୍ତାବିଜ୍ ଆଦି ଲେଖି କିଛି ପାରିଶ୍ରମିକ ମଧ୍ୟ ପାଉଥିଲେ । ମାଇନର ପାସ୍‌କରି ସେ ଶିକ୍ଷକ ତାଲିମ ନେଇ ଚାକିରି କରିବେ ବୋଲି କଟକ ନର୍ମାଲ ସ୍କୁଲରେ ପଢ଼ିବାକୁ ବାହାରିଲେ । ସମ୍ବଳଥାଏ ସ୍ୱଳ୍ପ ସଞ୍ଚିତ ଅର୍ଥ । ତାହା ସେ ପଣ୍ଡିତ ଗୋବିନ୍ଦ ରଥଙ୍କ ସହିତ କଲିକତାରେ ଶିଳ୍ପ-ପ୍ରଦର୍ଶନୀ ଦେଖିବାକୁ ଯାଇ ବ୍ୟୟ କରିଦେଲେ ।

ତେବେ ଶିକ୍ଷା ବିଭାଗର ସର୍ବୋଚ୍ଚ ହାକିମ କବିବର ରାଧାନାଥ ତାଙ୍କୁ ବଡ଼ମ୍ବା ଗଡ଼ଜାତର ଗୋପୀନାଥ ପୁରରେ ପ୍ରାଥମିକ ଶିକ୍ଷକ ଭାବରେ ନିଯୁକ୍ତି ଦେଲେ । ସେଠାରେ ତାଙ୍କ କର୍ମନିଷ୍ଠାରେ ଛାତ୍ରମାନେ ପ୍ରତିବର୍ଷ ବୃତ୍ତି ପାଇଲେ ଏବଂ ଶିକ୍ଷାର ପ୍ରସାର ପାଇଁ ସେ ନୈଶ୍ୟ ବିଦ୍ୟାଳୟ ମଧ୍ୟ ଚଲାଇଲେ । ଅବସର ପାଇଲେ ସେ ଓଡ଼ିଆ ଭାଷାରେ କବିତା ଓ ପ୍ରବନ୍ଧ ଲେଖୁଥିଲେ । ଏଥିରେ ମୁଗ୍ଧ

ବଡ଼ମ୍ବା ଗଡ଼ଜାତର ରାଣୀ ତାଙ୍କୁ ଏକ ସ୍ୱତନ୍ତ୍ର ଉତ୍ସବରେ 'ବିଦ୍ୟାରତ୍ନ' ଉପାଧି ପ୍ରଦାନ କଲେ । ଏହାଛଡ଼ା ସେ ସଂଗ୍ରାମୀ ଛାତ୍ରମାନଙ୍କୁ ଆର୍ଥିକ ସହାୟତା ମଧ୍ୟ କରୁଥିଲେ । ତାଙ୍କର ପୃଷ୍ଠପୋଷକତାରେ ମୋହନ ସୁବୁଦ୍ଧି ବଡ଼ମ୍ବାର ବିଶିଷ୍ଟ ଧନୀ ଏବଂ ଜନସେବୀ ହୋଇ ବାହାରିଲେ ।

ସେ ସେଠାରୁ ବାମଣ୍ଡା ଗଡ଼ଜାତର ରାଜା ସୁଚ୍ଚଳଦେବଙ୍କ ଠାରୁ ନିମନ୍ତ୍ରଣ ପାଇ ସ୍ୱଳ୍ପ ସମୟ ପାଇଁ ଶିକ୍ଷକତା କରିବାକୁ ଯାଇଥିଲେ । ସେଠାରେ ସେ ରାଜଦରବାରର ଉକିଲ ହେଲେ ଏବଂ 'ସମ୍ବଲପୁର ହିତୈଷିଣୀ' ସାପ୍ତାହିକ ସଂପାଦନା କରି ରାଧାନାଥ, ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର, ଚନ୍ଦ୍ରମୋହନ, ବିଶ୍ୱନାଥଙ୍କ ଲେଖା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଚିନ୍ତାମଣି (ପରେ କବିଶେଖର) ଗଙ୍ଗାଧର (ପରେ ସ୍ୱଭାବକବି)ଙ୍କ ପରି ବହୁ ନବଲେଖକଙ୍କର ସାରସ୍ୱତ ପୃଷ୍ଠପୋଷକତା ମଧ୍ୟ କରିଥିଲେ । ତାଙ୍କର ସତ୍ୟପ୍ରୀତି ନିଷ୍ଠା ସ୍ୱରଚିତ କବିତାଂଶରୁ ସ୍ପଷ୍ଟ ହୁଏ ।

"ହୋଇବେ ଏକତ୍ର ସର୍ବ ଦେବଗଣ
କରିବେ ଯଦି ମୋ ଜୀବନ-ହରଣ
ନ ତେଜିବି ସତ୍ୟପଥ ସଦାଶ୍ରୟ
ଦେବିନାହିଁ କେବେ ମିଥ୍ୟାରେ ଆଶ୍ରୟ ।"

ସେ କବିବର ରାଧାନାଥଙ୍କର 'ପାର୍ବତୀକାବ୍ୟ' ପ୍ରକାଶ କରି ବାମଣ୍ଡା ରାଜାଙ୍କର ବିରାଗ ଭାଜନ ହୋଇ ରାଜ୍ୟ ଛାଡ଼ିଲେ ଏବଂ ସମ୍ବଲପୁର କଚେରୀରେ ଚାଲୁଥିବା ହିନ୍ଦୀ ଭାଷା ବଦଳରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଆନ୍ଦୋଳନ କରି ସଫଳ ହେଲେ ।

ଏହାପରେ ସେ ଦକ୍ଷିଣ ଓଡ଼ିଶାର ଖଲ୍ଲିକୋଟ ଜମିଦାର ହରିହର ମର୍ଦ୍ଦରାଜଙ୍କ ପୃଷ୍ଠପୋଷକତାରେ ରମ୍ଭାଠାରେ ଛାପାଖାନା ପ୍ରତିଷ୍ଠା କରି ୧୯୦୨ ଜୁନ୍ ୨୫ ବୁଧବାର ଦିନ ସାପ୍ତାହିକ 'ପ୍ରଜାବନ୍ଧୁ' ପ୍ରକାଶ କଲେ । ସଂପାଦକ ଭାବରେ 'ପ୍ରଜାବନ୍ଧୁ'ର ପ୍ରଥମ ସଂଖ୍ୟାରେ ସେ ଲେଖିଥିଲେ'

"ହିତ କଥା, ଶୁଭଗର୍ଭା ସର୍ବ ସମାଚାର
କରିବ ଏ ପ୍ରଜାବନ୍ଧୁ ସକଳେ ପ୍ରଚାର ।"

ଜନ-ସେବା ଏବଂ ଓଡ଼ିଶା ଭୂଭିଜନରୁ ବିଚ୍ଛିନ୍ନ ଗଞ୍ଜାମକୁ ଓଡ଼ିଆ ଭାଷୀ ଅଞ୍ଚଳରେ ମିଶାଇବା ପାଇଁ ସେ 'ପ୍ରଜାବନ୍ଧୁ ସମିତି' ପ୍ରତିଷ୍ଠା କରିଥିଲେ । ତେବେ

ଜମିଦାରୀର ଆର୍ଥିକ ସଙ୍କଟ କାରଣରୁ ବିଦେଶୀ କମ୍ପାନୀ ନିଯୁକ୍ତ ମ୍ୟାନେଜରଙ୍କ ନିର୍ଦ୍ଦେଶରେ ପତ୍ରିକାର ପ୍ରକାଶନ ବନ୍ଦ ହୋଇଗଲା । ତେଣୁ ଆଳମଣି ଚତାପଇତା ସର୍ବସ୍ୱ ବ୍ରାହ୍ମଣମାନଙ୍କ ବଦଳରେ ବାସ୍ତବ ବ୍ରାହ୍ମଣ ପଣିଆର ଜାଗରଣ ପାଇଁ ବ୍ରାହ୍ମଣ ସମିତି ଗଠନ କଲେ ।

ଖଲିକୋଟରୁ ସେ ବଡ଼ଖେମଣ୍ଡି ଯିବାକୁ ମନସ୍ଥ କରିଥିଲେ ମଧ୍ୟ ହଗପହଣ୍ଡିର ଜମିଦାର କୃପାମୟଦେବଙ୍କ ଅନୁରୋଧ ଏଡ଼ାଇ ନ ପାରି ସେଠାକୁ ଗଲେ ଏବଂ ମାର୍କଣ୍ଡେୟ ତର୍କ ପଞ୍ଚାନନଙ୍କର ସମ୍ପାଦନାରେ ସେଠାରୁ ଅନିୟମିତ ଭାବରେ ପ୍ରକାଶ ପାଉଥିବା 'ଚମ୍ପାମ ଗୁଣ-ଦର୍ପଣର ସମ୍ପାଦନା ଏବଂ 'ଗଜପତି ଭୀମଦେବ ପ୍ରେସ୍'ର ପରିଚାଳନା ଦାୟିତ୍ୱ ନେଇ ପତ୍ରିକାକୁ ବହୁଳ ପ୍ରଚାରିତ କରି ପାରିଥିଲେ ।

ତାଙ୍କ ପରାମର୍ଶରେ ସେଠାର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ମଧ୍ୟ-ବିଦ୍ୟାଳୟକୁ ଉନ୍ନୀତ ହେଲା । ବାଳିକାମାନଙ୍କ ପାଇଁ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା ହେଲା । ଏହାଛଡ଼ା ବଡ଼ଖେମଣ୍ଡି ଟାଉନ୍‌ହଲ ଏବଂ ଲକ୍ଷ୍ମୀନାରାୟଣ ପାଠାଗାର ପ୍ରତିଷ୍ଠା ତାଙ୍କ ମୂଲ୍ୟବୋଧ ଭିତ୍ତିକ ଜନସେବାର ସ୍ୱାକ୍ଷର । ସେ ସେଠାରେ 'ଦେଶ ଉନ୍ନତି ଦାୟିତ୍ୱ ସମିତି' ଏବଂ 'ଯୁବକସମିତି' ଗଠନ କରି ଯୁବଜନମାନଙ୍କୁ ସଙ୍ଗଠିତ କରିବାର ସଫଳ ପ୍ରୟାସ କରିଥିଲେ । ବଡ଼ଖେମଣ୍ଡିରେ ଦୁଇଟି ପୁଅଙ୍କୁ ଛାଡ଼ିଦେଇ ପତ୍ନୀ ଇନ୍ଦୁମତୀ ସମ୍ବରଣ କରିଥିଲେ । ସେହି ସମୟରେ ପୁରୀର ଗଜପତି ମୁକୁନ୍ଦଦେବଙ୍କ ପୋଷ୍ୟପୁତ୍ର ଗ୍ରହଣ ପରିପ୍ରେକ୍ଷୀରେ ବଡ଼ଖେମଣ୍ଡି ଓ ବାମଣ୍ଡା ରାଜ୍ୟମଧ୍ୟରେ ମାଲିମକଦ୍ଦମା ଚାଲୁଥାଏ । ତାଙ୍କର ବାମଣ୍ଡା ରାଜବଂଶଙ୍କ ସହିତ ସମ୍ପର୍କକୁ ନେଇ ବଡ଼ଖେମଣ୍ଡିର ଜମିଦାର କୃପାମୟ ଦେବ ସନ୍ଦେହ କରିବାରୁ ସେ ଧରାକୋଟ ଜମିଦାର ମଦନମୋହନ ସିଂହଙ୍କ ପ୍ରସ୍ତାବିତ ଖବରକାଗଜର ସମ୍ପାଦନା କରିବାକୁ ରାଜ-ଅତିଥି ଭାବରେ ବ୍ରହ୍ମପୁର-ଡାକବଙ୍ଗଳାରେ ଆସି ରହିଲେ ।

କୃପାମୟ ଦେବ ତାଙ୍କୁ ଅଯଥା ସନ୍ଦେହ କରିଥିବାରୁ ଅନୁତପ୍ତ ହୋଇ ବାର୍ତ୍ତା ଦେବାରୁ ସେ ବଡ଼ଖେମଣ୍ଡି ଫେରିଗଲେ ଏବଂ ଜମିଦାରଙ୍କର ମୃତ୍ୟୁପର୍ଯ୍ୟନ୍ତ ସେଠାରେ ରହି ମାସିକ ପତ୍ରିକା 'ଉତ୍କଳ ମଧୁପ' ସମ୍ପାଦନା କଲେ । କଟକରୁ ପ୍ରକାଶିତ 'ଉତ୍କଳ-ଦୀପିକା' ସାପ୍ତାହିକର ସମ୍ପାଦକ କର୍ମବୀର ଗୌରୀଶଙ୍କରଙ୍କ ମୃତ୍ୟୁ ହେବାରୁ ସେହି ପତ୍ରିକାର ସମ୍ପାଦନା ପାଇଁ କଟକ ସହରରେ ଶେଷଜୀବନ ଯାଏ କର୍ମରତ ରହିଲେ ।

ଦେଶପ୍ରେମୀ-ସମ୍ପାଦକ ନୀଳମଣି ପ୍ରତିନିଧି ଦଳ ଗଠନ କରି ତତ୍କାଳୀନ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ଭେଟି ଓଡ଼ିଆ ଜନସାଧାରଣଙ୍କର ଅଭାବ ଅସୁବିଧା ବିଷୟ ଜଣାଇଥିଲେ । ବାଲ୍ୟବିବାହ ଏବଂ ପଇସା ଲୋଭରେ ଏପରିକି ସାତ ଆଠ ବର୍ଷର କନ୍ୟାର ଷାଠିଏ ପଞ୍ଚଷଠି ବର୍ଷର ବୟସ୍କ ସହିତ ବିବାହର ପରିଣତିରେ ଶାଶୁଘରକୁ ଯିବାପୂର୍ବରୁ ହେଉଥିବା ବିଧବାଙ୍କ ଦୁଃଖ ନିର୍ଯାତନା ବିରୋଧରେ ଆନ୍ଦୋଳନ କରି ସେ ବିଧବା ବିବାହର ପ୍ରଚଳନ ପାଇଁ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ, ପୁରୀ ମନ୍ଦିରର ମ୍ୟାନେଜରଙ୍କ ପୃଷ୍ଠପୋଷକତାରେ ସେ ପୁରୀରେ ଅସହାୟ ବିଧବାମାନଙ୍କର ପୁନର୍ବସତି ପାଇଁ ବିଧବା ଆଶ୍ରମ ପ୍ରତିଷ୍ଠା କରିଥିଲେ ।

ସେତେବେଳକୁ ନବଗଠିତ ଭାରତୀୟ ଜାତୀୟ କଂଗ୍ରେସରେ, ସ୍ଥାନୀୟ ସମସ୍ୟାର ଚର୍ଚ୍ଚା ସମ୍ଭବପର ହେଉ ନ ଥାଏ । ତେଣୁ ବଙ୍ଗ ପ୍ରାଦେଶିକ ସମ୍ମିଳନୀରେ ବଙ୍ଗ—ମହାପ୍ରଦେଶର ସ୍ଥାନୀୟ ସମସ୍ୟା ଏବଂ ସମ୍ଭାବ୍ୟ ସମାଧାନ ବିଷୟ ଚର୍ଚ୍ଚା ପାଇଁ ବିଭିନ୍ନ ଅଞ୍ଚଳରେ ଅଧିବେଶନ ଅନୁଷ୍ଠିତ ହେଉଥିଲା । କଂଗ୍ରେସନେତା ସୁରେନ୍ଦ୍ରନାଥ ବାନାର୍ଜୀ (ବହିଷ୍କୃତ ଆଇ. ସି. ଏସ.) ବଙ୍ଗ ପ୍ରାଦେଶିକ ସମ୍ମିଳନୀରେ ଓଡ଼ିଶା ବିଷୟ ଆଲୋଚନା ପାଇଁ କଟକରେ ସ୍ୱତନ୍ତ୍ର ଅଧିବେଶନର ଆୟୋଜନ ଦାୟିତ୍ୱ ଉତ୍କଳ-ଗୌରବ ମଧୁସୂଦନଙ୍କୁ ଦେଇଥିଲେ ଏବଂ ସେ ତାହା ଗ୍ରହଣ କରି ଥିଲେ ।

କିନ୍ତୁ ବିଭିନ୍ନ ମହାପ୍ରଦେଶରେ ରହିଥିବା ଓଡ଼ିଆ ଭାଷାଭାଷୀ ଜନ-ସାଧାରଣ ବଙ୍ଗୀୟ ପ୍ରାଦେଶିକ ସମ୍ମିଳନୀ ମଞ୍ଚରେ ଏକତ୍ର ହେବାକୁ ଅସ୍ୱୀକାର କରିବାରୁ ବଂଗ ପ୍ରାଦେଶିକ ସମ୍ମିଳନୀର କଟକ ଅଧିବେଶନ ବନ୍ଦ ହୋଇଗଲା । ତହୁଁ ମାନ୍ଦ୍ରାଜ ମହାପ୍ରଦେଶ ଶାସନାଧୀନ ଖଲ୍ଲିକୋଟ ଜମିଦାର ହରିହର ମର୍ଦ୍ଦରାଜ ନୀଳମଣି ବିଦ୍ୟାରତ୍ନଙ୍କ ପରାମର୍ଶ ଗ୍ରହଣ କରି ଗଞ୍ଜାମ ଜାତୀୟ ସମ୍ମିଳନୀର ଆବାହକ ହେଲେ । ଏହି ସମ୍ମିଳନୀରେ ମୁକ୍ତାର ରାମଚନ୍ଦ୍ର ଦାସ ଏବଂ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି ଉତ୍କଳ-ଗୌରବ ମଧୁସୂଦନ ଯୋଗଦେଇ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପାଇଁ 'ଉତ୍କଳ ସମ୍ମିଳନୀ' ଗଠନର ସିଦ୍ଧାନ୍ତ ନେଲେ । ଫଳରେ ଦେଶମିଶ୍ରଣ ଆନ୍ଦୋଳନର ସଫଳ ପ୍ରୟାସ ନୀଳମଣି ବିଦ୍ୟାରତ୍ନଙ୍କ ସୁଦୂର ପ୍ରସାରି ଦୃଷ୍ଟିକୋଣ ଏବଂ ପଶ୍ଚିମ ଓଡ଼ିଶା ତଥା ଦକ୍ଷିଣ ଓଡ଼ିଶାର ବାସ୍ତବସମସ୍ୟା ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତିର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା ।

ଉଚ୍ଚ ଆନୁଷ୍ଠାନିକ ଶିକ୍ଷା ନ ଥାଇ ମଧ୍ୟ 'ଅନୁଭବସିଦ୍ଧ ବିଦ୍ୱାନ' ପରିସ୍ଥିତି ଏବଂ ପରିବେଶ ସହିତ ଆପୋଷବିହୀନ ସଂଗ୍ରାମ କରି କରି ନୀଳମଣି ବିଦ୍ୟାରତ୍ନ

ଆଧୁନିକ ଓଡ଼ିଶାର ବାସ୍ତବ ଭିତ୍ତିଭୂମି ଏବଂ ସମ୍ଭବତଃ ସ୍ଥାପନ କରିଗଲେ । ସେ ସାଧ୍ୟମତେ କବି, ଶିଳ୍ପୀ ଏବଂ ପଣ୍ଡିତମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦେଉଥିଲେ । ଏପରିକି ରାଜା,ଜମିଦାରମାନଙ୍କୁ ପ୍ରଭାବିତ କରି ସେ ପଠାଣିସାମନ୍ତ, ଦେଶପ୍ରେମୀ ବୃଦ୍ଧ ହରିହର ସଦସ୍ୟ, ସତ୍ୟବାଦୀ ବନ ବିଦ୍ୟାଳୟ, 'ସମାଜ' ସାପ୍ତାହିକ, 'ଆଶା' ସାପ୍ତାହିକକୁ ଆର୍ଥିକ ପୃଷ୍ଠପୋଷକତା ଯୋଗାଇ ପାରିଥିଲେ ।

ଏହି ମହାନ୍ ଦେଶପ୍ରେମୀ ବିଦ୍ୱାନ୍ ପଣ୍ଡିତ ଅହଙ୍କାରୀ ନ ଥିଲେ । ଗରିବମାନଙ୍କୁ ଶହ ଶହ ଟଙ୍କା ଦାନ କରୁଥିଲେ ମଧ୍ୟ ସେ ମୋଟା ବଲଭାଖଦୀ ପିନ୍ଧୁଥିଲେ ଏବଂ ମୋଟା ଚାଉଳ ଭାତ ଖାଉଥିଲେ । 'ଉତ୍କଳ-ଦୀପିକା' ସମ୍ପାଦନା କରୁଥିବା ବେଳେ ଅଗ୍ନିମାନ୍ଦ୍ୟ ଏବଂ କୋଷ୍ଠ-କାଠିନ୍ୟରେ ସେ ଶଯ୍ୟାଶାୟୀ ହୋଇ ୧୯୨୩ ଜୁଲାଇ ୨୬ ରାତି ବାରଟା ବେଳେ, ଶେଷ ନିଶ୍ୱାସ ତ୍ୟାଗ କଲେ ।

ତାଙ୍କର ଦେହାନ୍ତ ୧୯୧୩ ଜୁଲାଇ ୨୩ରେ ହୋଇଥିଲା ବୋଲି ଭିନ୍ନ ମତ ପ୍ରକାଶ ପାଏ । ମାତ୍ର କର୍ମବୀର ଗୌରିଶଙ୍କର ୧୯୧୭ରେ ଇହଲୀଳା ସମ୍ବରଣ କରିଥିବାରୁ ସେ ତାଙ୍କ ପରେ ଉତ୍କଳ-ଦୀପିକାର ସମ୍ପାଦନା କରି ୧୯୨୩ରେ ମୃତ୍ୟୁବରଣ କରିଥିଲେ ବୋଲି ଅଧିକ ଯୁକ୍ତିଯୁକ୍ତ । ଅବଶ୍ୟ ଜନ୍ମମୃତ୍ୟୁ ନେଇ ବିବାଦର ଗୁରୁତ୍ୱ କିଛି ନ ଥିଲେ ମଧ୍ୟ ତାଙ୍କ ସମ୍ପର୍କରେ ଆସିଥିବା ଲୋକେ ପରବର୍ତ୍ତୀ ସମୟରେ କାହିଁକି ଯେ ଏ ବିବାଦର ସମାଧାନ କରି ପାରିନାହାନ୍ତି, ତାହାହିଁ ବିସ୍ମୟ ।

ତତ୍କାଳୀନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଜାତି, ବର୍ଣ୍ଣ, ଧର୍ମ, ଅଞ୍ଚଳ ନିର୍ବିଶେଷରେ ସର୍ବଜନାଦୃତ ବିଦ୍ୱାନ ଜନ-ନେତା ଭାବରେ ନୀଳମଣି ବିଦ୍ୟାରତ୍ନଙ୍କ କୃତି ଏବଂ କୀର୍ତ୍ତି କାଳୋତ୍ତୀର୍ଣ୍ଣ । ତାଙ୍କ ବ୍ୟକ୍ତିତ୍ୱ ଏବଂ ମନୀଷ ପଣିଆର ପ୍ରଭାବରେ ଜ୍ୟୋତିଷ୍ଟୂନ ରାୟସାହେବ ବିଶ୍ୱମ୍ଭର ମିଶ୍ର (ରେଭେନ୍‌ସା କଲେଜିଏଟ୍‌ସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ) ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ସଫଳ ଉଦ୍ୟମ କରି ଯାଇଛନ୍ତି ।

୧୯୨୮ ପରେ ଓଡ଼ିଆ ଭାଷୀ ଅଞ୍ଚଳର ଗଡ଼ଜାତ ରାଜା ଜମିଦାରମାନଙ୍କୁ ପାଶ୍ଚାତ୍ୟ ସାମନ୍ତବାଦୀ ଦୃଷ୍ଟିକୋଣରୁ ଅନୁଧ୍ୟାନ କରାଯାଇ କର୍ମ-ସମ୍ପୃକ୍ତ ଭିତ୍ତିକ ବଦାନ୍ୟ-ରାଜତନ୍ତ୍ରର କଦର୍ଥ କରାଯାଇ କର୍ମ-ଭିତ୍ତିକ ଏକ ବୃତ୍ତି ଅଭିମୁଖୀ ପରିବାରକୁ ନେଇ ଗଠିତ ସ୍ୱୟଂଶାସିତ ସମାଜର ଗଠନତନ୍ତ୍ରକୁ ନିନ୍ଦନୀୟ ପ୍ରତିପନ୍ନ କରାଯାଇଥିଲେ ମଧ୍ୟ ଗଡ଼ଜାତ ମିଶ୍ରଣ ପରେ ଏବର ଓଡ଼ିଶାର ବରପୁତ୍ରମାନଙ୍କ

ମଧ୍ୟରେ ଏହି ଗଡ଼ଜାତର ଜନନେତାମାନଙ୍କର ଭୂମିକା ଏବଂ ମୂଲ୍ୟବୋଧର ଯଥାର୍ଥ ବସ୍ତୁନିଷ୍ଠ ବିଶ୍ଳେଷଣ କରାଯାଇ ନାହିଁ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସ୍ୱାତନ୍ତ୍ର, ସ୍ୱାଭିମାନ, ସାହିତ୍ୟ, ସଂସ୍କୃତି ଏବଂ ଶିକ୍ଷା ପାଇଁ ଏହି ଗଡ଼ଜାତ ସମୂହର ଇତିହାସର ଯଥାର୍ଥ ମୂଲ୍ୟାୟନ ବ୍ୟତୀତ ଦକ୍ଷିଣ ଓଡ଼ିଶା, ପଶ୍ଚିମ ଓଡ଼ିଶା ଭିତ୍ତିକ ବିଚ୍ଛିନ୍ନତାବାଦୀ ଆନ୍ଦୋଳନର ସମାଧାନ ହେବା ସାଂପ୍ରତିକ ପରିପ୍ରେକ୍ଷୀରେ ସମ୍ଭବପର ନୁହେଁ ।

ଯେତେ ଅପ୍ରିୟ ହେଲେ ମଧ୍ୟ ସତ୍ୟର ପରିପ୍ରକାଶ ପାଇଁ ନୀଳମଣି ବିଦ୍ୟାରତ୍ନଙ୍କ ପରି ସ୍ୱେଚ୍ଛାରେ ଦାରିଦ୍ର୍ୟ ବରଣ କରିଥିବା ଦେଶପ୍ରେମୀ ବିଦ୍ୱାନ-ମାନଙ୍କର ସମୂହ-ଧର୍ମୀ ଭୂମିକାର ସ୍ମରଣ ହେଉଛି ପୂର୍ବପୁରୁଷ ପ୍ରତି ବର୍ତ୍ତମାନ ପୁରୁଷର ଶ୍ରଦ୍ଧାର ଚିରପ୍ରବହମାନ ପରମ୍ପରା । ଯେଉଁଠି ବ୍ୟକ୍ତିଗତ ସ୍ୱାର୍ଥ ଓ ସ୍ୱାଚ୍ଛନ୍ଦ୍ୟ କାଳୋତ୍ତୀର୍ଣ୍ଣ ଜାତି-ପ୍ରାଣ-ସିନ୍ଧୁରେ ବିଲୀନ ହୋଇଯାଏ । ବହୁ ଆଞ୍ଚଳିକ ନିର୍ଝରଣୀର ତଲ୍ଲୀନରେ ତଥାପି ମହାସିନ୍ଧୁ ଗର୍ଜନ କରି ମହାକାଳକୁ ସତର୍କ କରାଇ ନିଏ, ଯେ 'ସର୍ବଗୁଣା କାଞ୍ଚନ ମାଶ୍ରୟନ୍ତି' ଜନିତ ଆଦର୍ଶ ଶ୍ରେଣୀ-ସଂଘର୍ଷ ସୃଷ୍ଟି କରିବାରେ ସମର୍ଥ ହେଲେ ମଧ୍ୟ ତ୍ୟାଗ ହିଁ ହେଉଛି ସୁଖ ଓ ଶାନ୍ତିର ପ୍ରତୀକ । ପୁରୁଷୋତ୍ତମ ନୀଳମଣି ବିଦ୍ୟାରତ୍ନ ସେହି ଅପରିଗ୍ରହ ମୂଲ୍ୟବୋଧର ଅନ୍ୟତମ ସଫଳ ଉଦ୍ଗାତା । ତ୍ୟାଗ ଶୁଦ୍ଧ ପୁରୁଷୋତ୍ତମ ବସ୍ତୁ ଓ ଅଧ୍ୟାତ୍ମର ସମନ୍ୱୟରେ ପ୍ରତିଭା ଅତିମାନସ ଅତିକ୍ରମ କରି ସମୂହର ଭାବମୂର୍ତ୍ତିକୁ ସମୁଜ୍ଜ୍ୱଳ କରିଥାଏ ।

ଅପର୍ଣ୍ଣା
ସୁତାହାଟ, କଟକ—୧

———

# ସ୍ୱଭାବ କବି ଓ କବିଧାରଣେ

ହରଶଙ୍କର ବଡ଼ପଣ୍ଡା

ଓଡ଼ିଆ ସାହିତ୍ୟ ଆକାଶରେ ସ୍ୱଭାବ କବି ଗଙ୍ଗାଧର ମେହେର ଏକ ଅନନ୍ୟ ଜ୍ୟୋତିର୍ମୟ ଭାସ୍କର ବୋଲିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱର୍ଗୀୟ ଡକ୍ଟର ମାୟାଧର ମାନସିଂଙ୍କ ଭାଷାରେ—"ଗଙ୍ଗାଧର ଥିଲେ ରଙ୍ଗାର୍ଣ୍ଣବ !··· ଶ୍ରବଣ ସୁଖଦାୟୀ ଶବ୍ଦ ଶିଳ୍ପୀ ଭାବରେ ଗଙ୍ଗାଧରଙ୍କ ସ୍ଥାନତ ଅବିସମ୍ବାଦୀ, ଉଚ୍ଚାଦର୍ଶବାଦୀ, ସତ୍ୟସ୍ରଷ୍ଟା ଭାବୁକ ଭାବରେ ମଧ୍ୟ ତାଙ୍କର ସ୍ଥାନ ସମସ୍ତ ସମସାମୟିକମାନଙ୍କ ମଧ୍ୟରେ ଉଚ୍ଚତର ।" ସେ ଯାହା ବି ଲେଖିଛନ୍ତି ତାହା ଚିରନ୍ତନ, କଲ୍ୟାଣକର ତଥା ଦେଶ ଓ ଜାତିର ସ୍ୱାର୍ଥରେ ଉତ୍ସର୍ଗୀକୃତ ! !

ଗଙ୍ଗାଧର ଗ୍ରନ୍ଥାବଳୀରୁ ତାଙ୍କର ଜୀବନୀ ବୃତ୍ତାନ୍ତ ସମ୍ବନ୍ଧରେ କିଛି ଧାରଣା କରିହୁଏ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଅତିକମ କହିଲେ ଠିକ୍ ହେବ । କବି ଥିଲେ ସ୍ୱଳ୍ପ ଆୟ କରି ପାରୁଥିବା ଜଣେ ଦୁଃଖୀ ମଣିଷ, କିନ୍ତୁ ଜଞ୍ଜାଳରେ ସର୍ବଦା ଜର୍ଜରିତ । ଦାରିଦ୍ର୍ୟ ତାଙ୍କୁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଛାଡ଼ି ନ ଥିଲା । ପରିବାରର ଭରଣପୋଷଣ ତଥା ଅନ୍ୟାନ୍ୟ ସମସ୍ୟାରେ ଜର୍ଜରିତ ହୋଇ ମଧ୍ୟ ତାଙ୍କ ଅନୁପମ କାବ୍ୟ ସୃଷ୍ଟିରୁ କେବେ ବିମୁଖ ହୋଇ ନ ଥିଲେ । କିନ୍ତୁ ଥିଲେ ଅନ୍ୟ ପକ୍ଷରେ ପ୍ରଚଣ୍ଡ ସ୍ୱାଭିମାନୀ, ଗୁଣଗ୍ରାହୀ, ବିନୟୀ ତଥା ଈଶ୍ୱର ଭକ୍ତ, ପ୍ରକୃତି ଉପାସକ । ତାଙ୍କ କାବ୍ୟ ଗ୍ରନ୍ଥ ପ୍ରକାଶନ ପାଇଁ ସେ ଅନେକ ଗୁଣଗ୍ରାହୀ ସୁଶାସକ, ରାଜା ମହାରାଜା, ସାହିତ୍ୟ ରସିକ, ବନ୍ଧୁ, ସୁହୃଦମାନଙ୍କ ଶ୍ରଦ୍ଧା ଓ ଆଶୀର୍ବାଦ ଲାଭ କରିଥିଲେ । କିନ୍ତୁ ଯାହାଙ୍କଠାରୁ ସାହାଯ୍ୟ ପାଇଥିଲେ ଅତି ବିନମ୍ର ଭାବରେ ସେମାନଙ୍କଠାରେ କୃତଜ୍ଞ ଥିଲେ । ଏହା ତାଙ୍କର ପ୍ରତ୍ୟେକ କାବ୍ୟଗ୍ରନ୍ଥର ଭୂମିକାରୁ ପ୍ରମାଣିତ ହୁଏ । ଏପରି କୃତଜ୍ଞତା ପାଇଁ ସେ କଦାପି କୁଣ୍ଠାବୋଧ କରି ନାହାନ୍ତି ତଥା ଅନେକ ସଂକଳନ ସେପରି ମହାନ୍ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ମଧ୍ୟ ଉତ୍ସର୍ଗ କରି ଯାଇଛନ୍ତି ।

ଏପରି ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଥିଲେ 'ସମ୍ବଲପୁର ହିତୈଷିଣୀ'ର ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ସେତେବେଳେ ବାମଣ୍ଡାଧିପତି ଥିଲେ ପ୍ରଖ୍ୟାତ କବି ସାର୍ ବାସୁଦେବ ସୁଢ଼ଳଦେବ । ତାଙ୍କ ଶୁଭ ଆଶୀର୍ବାଦ ଓ ପୃଷ୍ଠ-ପୋଷକତାରେ ମାତୃଭୂମି ଓ ମାତୃଭୂମିର ସୁରକ୍ଷା ଓ ସମୃଦ୍ଧି ପାଇଁ ଆବିର୍ଭାବ ହେଲା ଏହି ପ୍ରଖ୍ୟାତ ପତ୍ରିକା ୧୮୮୯ ମଇମାସ ୩୦ ତାରିଖରେ । ଏହାର ସମ୍ପାଦନା ଦାୟିତ୍ୱରେ ଥିଲେ ବାଙ୍କୀ ବୈଦେଶ୍ୱର ନିବାସୀ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ଏ ମହାଶୟଙ୍କ ବଳିଷ୍ଠ ସମ୍ପାଦନା ଓଡ଼ିଶା ରାଜନୀତି, ଶିକ୍ଷା, ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଅନନ୍ୟ ସାରସ୍ୱତ ଆନ୍ଦୋଳନ ଆଣିଥିଲା କହିଲେ ବୋଧହୁଏ ଯଥାର୍ଥ ହେବ । ପତ୍ରିକାଟି ୧୯୨୩ ମାର୍ଚ୍ଚ ପର୍ଯ୍ୟନ୍ତ ଦୀର୍ଘ ୩୪ବର୍ଷ କାଳ ପ୍ରକାଶିତ ହୋଇଥିଲା । ବିଦ୍ୟାରତ୍ନେ ଦୀର୍ଘ ୧୩ ବର୍ଷ କାଳ ଏହାର ସମ୍ପାଦନା କରିଥିଲେ । ଏପରି ଜଣେ ସାରସ୍ୱତ, ସାହିତ୍ୟ ତଥା ସଂସ୍କୃତି ପଣ୍ଡିତଙ୍କ ସାହଚର୍ଯ୍ୟ ଆଶୀର୍ବାଦ ତଥା ପ୍ରେରଣା ସ୍ୱଭାବ କବିଙ୍କ ଜୀବନରେ ସୁସାହିତ୍ୟ ସୃଷ୍ଟି ପାଇଁ ଅତୁଟ ତଥା ଅଧୂଚ ଥିଲା ଏଥିରେ ଦ୍ୱିରୁକ୍ତି ନ ଥିଲା । ବିଦ୍ୟାରତ୍ନଙ୍କ ସହିତ କବି ଗଙ୍ଗାଧରଙ୍କ ସମ୍ପର୍କ ସମ୍ବନ୍ଧରେ କିଛି ଆଲୋକପାତ କରିବା ଏ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ।

ତାଙ୍କର ପ୍ରସିଦ୍ଧ 'କୀଚକବଧ' କାବ୍ୟ ପ୍ରକାଶିତ ହେଲା ୧୯୦୪ରେ । ସେତେବେଳେ ବିଦ୍ୟାରତ୍ନ 'ପ୍ରଜାବନ୍ଧୁ'ର ସମ୍ପାଦକ ଥିଲେ । ଗଙ୍ଗାଧର 'କୀଚକବଧ'ର ଭୂମିକାରେ ଲେଖିଛନ୍ତି ଯେ "ପ୍ରଜାବନ୍ଧୁ"ର ସମ୍ପାଦକ ବାବୁ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ ଉତ୍ତେଜନାରେ ଏହି କ୍ଷୁଦ୍ରଗ୍ରନ୍ଥ ରଚିତ ହୋଇ ପାଣ୍ଡୁଲିପି ପ୍ରଥମରେ କବିବର ଶ୍ରୀଯୁକ୍ତ ରାଧାନାଥ ରାୟବାହାଦୂରଙ୍କ ନିକଟକୁ ପ୍ରେରିତ ହୋଇଥିଲା । × × × 'ପ୍ରଜାବନ୍ଧୁ ଓ ପ୍ରଜାବନ୍ଧୁଙ୍କର ପ୍ରକାଶିତ କବିବର ରାୟ ମହୋଦୟଙ୍କର ମନ୍ତବ୍ୟ ପାଠ କରି ମାନନୀୟ ଶ୍ରୀଯୁକ୍ତ ମଧୁସୂଦନ ଦାସ, ଏମ୍.ଏ.ସି.ଆଇ.ଇ ମହୋଦୟ ପୁସ୍ତକର ମୁଦ୍ରଣ-ବ୍ୟୟ ଦାନର ଅଙ୍ଗୀକାର କରିବାରୁ ଗ୍ରନ୍ଥ ପ୍ରକାଶିତ ହେଲା । × × × "ଏଥିରେ ଲକ୍ଷ୍ୟଣୀୟ ଶବ୍ଦ ହେଉଛି 'ଉତ୍ତେଜନା' ଯାହା ହୋଇ ନ ଥିଲେ ଏ କାବ୍ୟ ବୋଧହୁଏ ଲେଖାହୋଇ ପାରି ନ ଥାନ୍ତା । ତେଣୁ ବିଦ୍ୟାରତ୍ନ କବି ଗଙ୍ଗାଧରଙ୍କ ସହିତ ସୁସମ୍ପର୍କ ତ ରଖିଥିଲେ ତାଙ୍କ କାବ୍ୟ-କବିତା ଲେଖିବାରେ ମଧ୍ୟ ପ୍ରଭୁତ ପ୍ରେରଣା ଦେଉଥିଲେ, ଏହା ନିଃସନ୍ଦେହ ।

ସେହିପରି 'ଅର୍ଘ୍ୟଥାଳୀ' ଗ୍ରନ୍ଥର ଭୂମିକାରେ କବି କହିଛନ୍ତି "ମୋର ଚିର ହିତୈଷୀ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ମହାଶୟ । ୫/୬ବର୍ଷ ପୂର୍ବେ ଗ୍ରାମ ପଞ୍ଚାୟତ

ବିଷୟକୁ ଗୋଟିଏ ବୃହତ୍ ପଦ୍ୟ ଲେଖିବା ନିମନ୍ତେ ଉପଦେଶ ଦେଇଥିଲେ । ସେ ସମୟରେ ତାହାର ଆରମ୍ଭ ମାତ୍ର କରିଥିଲି । ସଂପ୍ରତି ପ୍ରଶଂସିତ ପାରଳାଧିପତିଙ୍କ କୃପା ଦୃଷ୍ଟିରେ ତାହା ପୂର୍ଣ୍ଣ ପଲ୍ଲବିତ ହେବାରୁ ତାହାକୁ ଦୁର୍ବା ବଦରୀ ପତ୍ର ରୂପେ ଏହି 'ଅର୍ଘ୍ୟଥାଳୀ'ରେ ରଖିଲି । ଏ କାବ୍ୟ ଗ୍ରନ୍ଥ ପ୍ରକାଶିତ ହୋଇଥିଲା ୧୯୧୮ରେ' ଯଦିଓ ବିଦ୍ୟାରତ୍ନେ ସେତେବେଳେ 'ହିତୈଷିଣୀ'ର ସମ୍ପାଦକ ନ ଥିଲେ ତଥାପି ତାଙ୍କ ସମ୍ପର୍କ ସ୍ୱଭାବ କବିଙ୍କ ସାଙ୍ଗ ଅତୁଟ ଥିଲା ।

ବିଦ୍ୟାରତ୍ନଙ୍କ ଆଶୀର୍ବାଦ ପାଇଁ ସ୍ୱଭାବ କବି ତାଙ୍କର କୃତଜ୍ଞତା ଲିପିବଦ୍ଧ କରି ଯାଇଛନ୍ତି । 'ଅର୍ଘ୍ୟଥାଳୀ'ରେ ତାଙ୍କ କବିତା' ବିଦ୍ୟାରତ୍ନଙ୍କ 'ହିତୈଷିଣୀ'ରେ ସେ ଲେଖିଛନ୍ତି ।

''ବୁଧହଂସ କେଳିସର' ଦେବ ଦୁର୍ଗଧାମେ
ଜନମିଲା ସୁପତ୍ରିକା 'ହିତୈଷିଣୀ' ନାମେ
ଶାପ ଭ୍ରଷ୍ଟ ଦେବ ଥିଲେ ନରେନ୍ଦ୍ର ସୁଢ଼ଳ
ଭାରତ ଉଦ୍ୟାନେ ତାଙ୍କ ଅନେକ ସୁଫଳ ।

× × ×

ଧନ୍ୟ ଧନ୍ୟ ବାସୁଦେବ ମହୀପାଳ ମଣି
ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି
ଉତ୍କଳରେ କରି ଶୁଭ ଯଜ୍ଞର ଆରମ୍ଭ
ସ୍ଥାପି ଦେଲ କାଳଦର୍ପଧ୍ୱଂସୀ ଯୂପସ୍ତମ୍ଭ"

ସେହିପରି 'କବିତାମାଳା' ସଂକଳନରେ ସ୍ୱଭାବ କବି "ସମ୍ବଲପୁର ହିତୈଷିଣୀ'ର ନବବର୍ଷ ଉପଲକ୍ଷରେ ଲିଖିତ" ଶୀର୍ଷକ କବିତାକୁ ସ୍ଥାନ ଦେଇଛନ୍ତି । ଏ କବିତାରେ ମଧ୍ୟ କବି 'ହିତୈଷିଣୀ'ର ଆଶୀର୍ବାଦ ଭିକ୍ଷା କରିଛନ୍ତି ।

'ହଅ ହେ କ୍ଷମତା ଲୋଭର ମମତା
ମ୍ଳାନ ହେବ ମୋ ମନରେ
ବାଧା ଉପଗତ ହେଲେ ସମରଥ
ହେବ ତାହା ସହନରେ

× × ×

ବାଳକର ଖଡ଼ୀ –ଗାର ମାନ ପଢ଼ା
ଗଲେ ପଣ୍ଡିତ ନୟନେ
ଅକ୍ଷର ବାହାର କରନ୍ତି ପଣ୍ଡାର
ଅଜ୍ଞତା ନ ଘେନ ମନେ

× × ×

ଏହି ବକ୍ତବ୍ୟରେ କବି ନିଜଠି ଲୋଭର ମମତା ଲୀନ ହେଉ ବୋଲି ଏବଂ ନିଜକୁ ଅତି ବାଳକ ପରି ପଣ୍ଡିତ ନୟନର ଦୁର୍ଲଭ ଅଶିଷ ଭିକ୍ଷା କରିଛନ୍ତି । ଏଥିରୁ ଏତିକି ଅନୁମିତ ହୁଏ ଯେ ସେ ଥିଲେ କେବଳ ବିନୟୀ, ଅଜ୍ଞବାଳକ ପରି ସରଳ ଏବଂ ପଣ୍ଡିତଙ୍କ ପ୍ରତି ଏତେ ଭକ୍ତିବାନ୍ !!

'ସମ୍ବଲପୁର ହିତୈଷିଣୀ'ରେ ୩ । ୧୦ । ୧୮୯୪ରେ ପ୍ରକାଶ ହେଲା ତାଙ୍କ କବିତା 'ଭାରତୀ ବେଦନ' । ସ୍ୱଭାବ କବି ଲେଖିଥିଲେ 'ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି କରିବ ପରା ରାଜତ୍ୱ ।" ୧୮୯୪ରେ ସମ୍ବଲପୁରରେ ଏକ ଅଭୂତପୂର୍ବ ପ୍ରାଣସ୍ପନ୍ଦନ ସମସ୍ତ ଅଞ୍ଚଳର ପ୍ରାଣକୁ ଆନ୍ଦୋଳିତ କଲା । ମଧ୍ୟପ୍ରଦେଶ ସରକାର ଘୋଷଣା କଲେ ଯେ ୧୮୯୬ ଜାନୁଆରୀରୁ ହିନ୍ଦୀ ହେବ ସମ୍ବଲପୁରର ରାଜଭାଷା । ହିତୈଷିଣୀରେ ତାଙ୍କର କବିତା 'ଉତ୍କଳ ଭାରତୀଙ୍କ ନିବେଦନ ମଧ୍ୟ ୧୮୯୫ରେ ପ୍ରକାଶିତ ହେଲା । ବିଦ୍ୟାରତ୍ନେ କବିଙ୍କ ଏ କବିତା ସବୁ ପ୍ରକାଶିତ କରି କବିଙ୍କ ମାତୃଭାଷା ପ୍ରତି ମମତା ସର୍ବ ସମକ୍ଷରେ ଉପସ୍ଥାପିତ କରିଥିଲେ । ତେଣୁ ସମ୍ବଲପୁର ଭାଷା ବିଲୋପ ଆନ୍ଦୋଳନରେ ଏ ଦୁଇଜଣ ସାମିଲ ହେଲେ । ଫଳରେ ୧୯୦୩ ଠାରୁ ସମ୍ବଲପୁରର ରାଜଭାଷା ହେଲା ଓଡ଼ିଆ ଓ ୧୯୦୫ରେ ସମ୍ବଲପୁର ଓଡ଼ିଶା ସହିତ ମିଶ୍ରଣ ହୋଇଗଲା ।

ଓଡ଼ିଆ ସାହିତ୍ୟର ଇତିହାସର ପ୍ରଣେତା ଡକ୍ଟର ମାୟାଧର ମାନସିଂହ ଯଥାର୍ଥରେ କହିଛନ୍ତି—ହିତୈଷିଣୀ ସମ୍ପାଦକ ଭାବରେ ପ୍ରାଇମେରୀ ଶିକ୍ଷକ ବିଦ୍ୟାରତ୍ନେ ଓଡ଼ିଶାର ପତ୍ରିକା ପରିଚାଳନାକୁ ପ୍ରଥମ କରି ଗୌରବାନ୍ୱିତ, ପ୍ରତିଷ୍ଠାନ୍ୱିତ ଓ ଜାତି ଗଠନର ପ୍ରତ୍ୟକ୍ଷ ବାହକ କରି ଥୋଇଲେ । ସ୍ୱର୍ଗତ ମାନସିଂହ ଆହୁରି କହନ୍ତି 'ବିଦ୍ୟାରତ୍ନ ଓ ବିଦ୍ୟାରତ୍ନଙ୍କ ହିତୈଷିଣୀକୁ ବରେଣ୍ୟ କବି ମେହେର ଯେଉଁ ଯଥୋଚିତ ଅମରତ୍ୱ ଦେଇ ଯାଇଛନ୍ତି ତାହା ଓଡ଼ିଶାର ଅନ୍ୟ କୌଣସି ସମ୍ବାଦପତ୍ର ବା ସମ୍ପାଦକଙ୍କ ଭାଗ୍ୟରେ ଘଟି ନାହିଁ ।" ସ୍ୱଭାବ

କବିଙ୍କ ବିନମ୍ରୀ ସ୍ୱଭାବର ଏହାଠାରୁ ମହତ୍ତର ମୂଲ୍ୟ ଆଉ କ'ଣ ହୋଇପାରେ ? ତାଙ୍କର ନିଜସ୍ୱ ଲେଖା ଏକ କାବ୍ୟପଂକ୍ତି ସ୍ୱତଃ ମନକୁ ଆସିଯାଏ ।

"ନିଜ ଗୁଣ ଆଉ ପର ସଦ୍‌ଗୁଣ
ପ୍ରଶଂସାରେ ଜନ ହୋଇ ନିପୁଣ
ନିଜ ଗୁଣ ତରୁ କରେ ଫଳିତ
ଧନୁର୍ଗୁଣେ ଯିନା ଶର ଗୃଳିତ !"

କଥାରେ ଅଛି ଗୁଣ ଚହ୍ନେ ଗୁଣିଆ । ବିଦ୍ୟାରତ୍ନେ ନିଜେ ଥିଲେ ଗୁଣିଆ ଗୁଣ ଗ୍ରାହୀ, ପ୍ରଚଣ୍ଡ ପ୍ରତି ଧର ଆଉ ସ୍ୱଭାବ କବି ଥିଲେ ସ୍ୱୟଂ ସମ୍ପୂର୍ଣ୍ଣ କବି । ତେଣୁ ସେ ଗୁଣବାନ୍ କବିଙ୍କୁ ଲେଖିଥିଲେ "ପ୍ରଥମ ପତ୍ର ଲେଖିବା ପରେ ତପସ୍ୱିନୀ ଚତୁର୍ଥ ସର୍ଗ ଶ୍ରବଣ କଲି । ମୋର ବଂଶଧରମାନଙ୍କ ଆଶୀଷ ଗ୍ରହଣ କର । ତୁମେ ଏକା ଉତ୍କଳର ନୁହଁ ଭାରତର ଦ୍ୱିତୀୟ କାଳିଦାସ ବୋଲି ମୋର ବର୍ତ୍ତମାନ ଅଭିମତ ।" ଧନ୍ୟ ବିଦ୍ୟାରତ୍ନେ ସେ ଏ ଯଶୋଭୂଷିତ ପତ୍ରଦ୍ୱାରା ନିଜେହିଁ ଯଶୋମଣ୍ଡିତ ହୋଇଗଲେ । ବିଦ୍ୟାରତ୍ନଙ୍କ ସମ୍ବନ୍ଧକୁ ସ୍ୱଭାବକବିଙ୍କ ସହିତ ମଣି-କାଞ୍ଚନ ସଯୋଗ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଦୁଇଜଣ ଥିଲେ ପୁଣ୍ୟାତ୍ମା, ପୁଣ୍ୟଶ୍ଳୋକ, ମାତୃଭୂମି ଓ ମାତୃଭାଷାର ସ୍ୱୟଂ ସମର୍ପିତ ସେବକ—ଦୁଇଜଣ ଥିଲେ ସ୍ୱୟଂସ୍ଫୂର୍ତ୍ତି, ଯଶୋବାନ୍, ଗୁଣଗ୍ରାହୀ, ଶିରୋମଣୀ ଓ ସତ୍ୟନିଷ୍ଠ—ଏ ଜାତି ଭାଷାର ପରସ୍ପର ପରିପୂରକ ଏଥିରେ ସନ୍ଦେହ ନାହିଁ ।

ବାଣୀଶ୍ରୀବିହାର
ଆନନ୍ଦ ନଗର, ବଲାଙ୍ଗୀର—୭୬୭୦୦୧

ସହାୟକ ଗ୍ରନ୍ଥସୂଚୀ

ଗଙ୍ଗାଧର ଗ୍ରନ୍ଥାବଳୀ—୧୯୫୭ ସଂସ୍କରଣ ଦାସବ୍ରଦର୍ସ, ବ୍ରହ୍ମପୁର
ସାହିତ୍ୟର ଅନ୍ତଃସ୍ୱର, ୧୯୮୧ ଡ. ମଣୀନ୍ଦ୍ର କୁମାର ମେହେର
ମା ପ୍ରକାଶନ, ବରପାଲି

କାବ୍ୟଶିଳ୍ପୀ ଗଙ୍ଗାଧର, ୧୯୯୬, ଡ. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
ପ୍ରକାଶକ : ସରସ୍ୱତୀ ଉଦ୍‌ଗାତା, ସମ୍ବଲପୁର

———

( "ଛତ୍ରପତି ଶିବାଜୀ" ଏବଂ ଅଲର୍କ ଚରିତ"
ଅବଲମ୍ବନରେ ପ୍ରଣୀତ )

# ରାଜନୀତି

---

ଶ୍ରୀ ନୀଳମଣି ମିଶ୍ରଶର୍ମ୍ମା

କର୍ତ୍ତୃକ

ସଙ୍କଳିତ ଓ ପ୍ରକାଶିତ ।

ବାମଣ୍ଡା ସୁଢ଼ଲ ପ୍ରେସରେ ମୁଦ୍ରିତ ।

୧୮୯୭ ଖ୍ରୀଷ୍ଟାବ୍ଦ

# ଉପହାର

ବାମଣ୍ଡାର ଯୁବରାଜ ପରମମାନ୍ୟବର ଶ୍ରୀଯୁକ୍ତ ଶ୍ରୀ ସଚ୍ଚିଦାନନ୍ଦଦେବ
ମହୋଦୟଙ୍କ କର କମଳେଷୁ ।

ସବିନୟ ନିବେଦନ,

ଶ୍ରୀମନ୍ ଯୁବରାଜ ମହୋଦୟ, ଶ୍ରୀଗୁମୁଙ୍କର ଭବିଷ୍ୟତ ଜୀବନପ୍ରତି ସହସ୍ର' ନରନାରୀଙ୍କର ମଙ୍ଗଳାମଙ୍ଗଳ ନିର୍ଭର କରୁଅଛି । ବାସ୍ତବରେ ରାଜାଙ୍କର ଜୀବନ ବଡ଼ ଦାୟିତ୍ୱପୂର୍ଣ୍ଣ । କିମ୍ବଦନ୍ତୀ ଅଛି ଯେ "ରାଜା, ରାଜ୍ୟାଶ୍ରମର ଋଷି," ଏ ଉକ୍ତି ଅତୀବ ସତ୍ୟପୂର୍ଣ୍ଣ । କିନ୍ତୁ ଏଥିର ସଫଳତା ସକାଶେ କଠୋର ସଂଯମ ଆବଶ୍ୟକ, ଉପଯୁକ୍ତ ସଂଯମ ଅଭାବରୁ କେତେକେତେ ନରପତି ମଦନ ଓ ଆଳସ୍ୟର ଉପାସକ ହୋଇ ପ୍ରତ୍ୟବାୟଗ୍ରସ୍ତ ହୋଇଅଛନ୍ତି ଓ ହେଉଅଛନ୍ତି । ସୁଖର ବିଷୟ ଶ୍ରୀଗୁମୁ ତରୁଣ ଯୌବନରେ ପଦାର୍ପଣକରି ମୁଦ୍ଧା ସେମାନଙ୍କୁ ଅନ୍ତରଣରେ ରଖିଅଛନ୍ତି ଏବଂ ଆପଣାର ପିତା ମହାଯଶା ମହାରାଜ ଶ୍ରୀ ସୁଚଳଦେବଙ୍କୁ ଉତ୍ତମ ଆଦର୍ଶ ପାଇ ନିଜର ସର୍ବାଙ୍ଗୀନ ଉନ୍ନତି ସକାଶେ ଚେଷ୍ଟାନ୍ୱିତ ହୋଇଥିବାରୁ ଅଳ୍ପ ଉତ୍କଳରେ "ଆଦର୍ଶ ଯୁବରାଜ" ଆଖ୍ୟାଲାଭ କରି ଅଛନ୍ତି । ଏହିସବୁ କାରଣରୁ ଶ୍ରୀଗୁମୁଙ୍କୁ ସର୍ବଥା ଯୋଗ୍ୟ ପାତ୍ର ମନେକରି ଶ୍ରୀଗୁମୁଙ୍କର କର କମଳରେ ଏହି "ରାଜନୀତି" ପୁସ୍ତିକା ଉପହାର ପ୍ରଦାନ କଲି । ଶ୍ରୀଗୁମୁ ମୋହର ଏହି ସ୍ନେହୋପହାର ଗ୍ରହଣ କରି ପୁସ୍ତିକାଗତ ଉପଦେଶ ଗୁଡ଼ିକ ପାଳନ କରିବା ସକାଶେ ମନୋଯୋଗୀ ହେଉନ୍ତୁ ଏହାହିଁ ମୋହୋର ବିନୀତ ପ୍ରାର୍ଥନା ।

| | |
|---|---|
| ଦେବଗଡ଼<br>୧୫-୬-୧୮୯୬ | ଶ୍ରୀଗୁମୁଙ୍କର ଏକାନ୍ତ ମଙ୍ଗଳାକାଙ୍କ୍ଷୀ<br>ଶ୍ରୀ ନୀଳମଣି ଶର୍ମା । |

# ରାଜନୀତି

ସୁଖର ବିଷୟ ଆମ୍ଭମାନଙ୍କର ଏହି ସୁପବିତ୍ର ଜନ୍ମଭୂମି ଉତ୍କଳ ଦେଶରେ ଅନେକଗୁଡ଼ିଏ ଦେଶୀୟ କ୍ଷୁଦ୍ରରାଜ୍ୟ ଅଛି । ନିରପେକ୍ଷ ସମାଲୋଚକ ମାତ୍ରେ ଏକଥା ମୁକ୍ତ-କଣ୍ଠରେ ସ୍ୱୀକାର କରିବେ ଯେ ବିଦେଶୀୟ ରାଜାର ପ୍ରଜାହୋଇ ରହିବାଠାରୁ ସ୍ୱଦେଶୀୟ ରାଜାର ପ୍ରଜାହୋଇ ରହିବା ନାନାକାରଣରୁ ଏକାନ୍ତ ବାଞ୍ଛନୀୟ କିନ୍ତୁ ବର୍ତ୍ତମାନ ସ୍ଥଳବିଶେଷରେ ଦେଖାଯାଏ ଯେ ଦେଶୀୟ ରାଜ୍ୟର ପ୍ରଜାମାନେ ବିଦେଶୀୟ ଶାସନାଧୀନରେ ରହିବା ଶ୍ରେୟସ୍କର ମଣୁଅଛନ୍ତି । ଏଥିର କାରଣାନୁସନ୍ଧାନ କରିବା ସକାଶେ ଅଧିକ ଦୂର ଯିବାକୁ ହେବ ନାହିଁ । ସ୍ଥୂଳ-ବିଷୟରେ ଏକଥା ବୋଲଯାଇ ପାରେ ଯେ ରାଜାମାନଙ୍କର କର୍ତ୍ତବ୍ୟ ବିମୁଖତା ପ୍ରଜାମାନଙ୍କୁ ବିଦେଶୀୟ ଶାସନର ପକ୍ଷପାତୀ କରିଅଛି । ରାଜାମାନଙ୍କର କର୍ତ୍ତବ୍ୟ ଅତି ଗୁରୁତର, ସେମାନଙ୍କୁ କର୍ତ୍ତବ୍ୟପରାୟଣ ହେବା ସକାଶେ ଅନେକ ଗ୍ରନ୍ଥ ଅଧ୍ୟୟନ କରିବାକୁ ହେବ, ଅନେକ ଦେଶ ବୁଲିବାକୁ ହେବ, ନୀତିପରାୟଣ ସୁପଣ୍ଡିତମାନଙ୍କ ସହିତ ବାସକରିବାକୁ ହେବ, ଦୁଷ୍ଟବୁଦ୍ଧିମାନଙ୍କୁ ଦମନ କରିବାକୁ ହେବ, ଆତ୍ମସ୍ୱାର୍ଥକୁ ବଳିଦେଇ ପ୍ରଜାସମୂହର ସ୍ୱାର୍ଥରକ୍ଷା କରିବାକୁ ହେବ ଏବଂ ସର୍ବଦା ସର୍ବପ୍ରଯତ୍ନରେ ପ୍ରଜାମାନଙ୍କୁ ନିରାପଦରେ ରକ୍ଷା କରିବାକୁ ହେବ । 'ମହାଯାତ୍ରା'ର କବି ରାଜୋଦ୍ଦେଶ୍ୟରେ ଯଥାର୍ଥ କହି ଅଛନ୍ତି ଯେ—

"ହରିବ ନିରନ୍ତେ ପ୍ରଜାପୁଞ୍ଜ ଋଣଭାର
ମୁଣ୍ଡାଇଛ ମୁଣ୍ଡେ ରାଜମୁକୁଟର ବ୍ୟାଜେ"

ଉତ୍କଳରେ ଏପରି ଲକ୍ଷଣାକ୍ରାନ୍ତ ନରପତି କେତେଜଣ ଅଛନ୍ତି ? ସେଦିନ ଜଣେ କବି ଉତ୍କଳୀୟ ରାଜବୃନ୍ଦଙ୍କୁ ସମ୍ବୋଧନ କରି ଲେଖିଥିଲେ—

"ବୁଡ଼ିଣ ରହିଲ ଆମୋଦେ ଅବାଧି
ବିଦ୍ୟାକୁ ମଣିଲ ଶିବ ନିରମାଳି
ପର ସେବାଲାଗି ତୁମ୍ଭର ଜନମ
ଆତ୍ମ ସେବାବଳ କୌଳିକ ଧରମ

× × ×

ଐଶ୍ୱର୍ଯ୍ୟ—ଢର୍ମିରେ ଦୃଷ୍ଟି ପ୍ରତିହତ,
ଧନ ଦର୍ପ—ଶେଯେ ରୁଦ୍ଧ କର୍ଣ୍ଣପଥ

× × ×

ପଣ୍ଡିତଙ୍କ ଗଣ କେବଳ କଣ୍ଟକ
ଆସ୍ଥାନ—ନଳିନୀ—ଧୂର୍ତ୍ତ ବକ ଠକ
ପ୍ରତିଧ୍ୱନି ପରି ସଦା ସ୍ତବକାରୀ
ତୁମ୍ଭ ପ୍ରିୟପାତ୍ର ଗଉଡ଼ ଭଣ୍ଡାରୀ *
ସଭ୍ୟକଣ୍ଠେ ବାଜେ ଯେତେହେଁ ଶତସୂଚୀ !
ସ୍ୱାର୍ଥାନ୍ୱେଷି—ମିଥ୍ୟା 'ବାଦେ' ସଦାରୁଚି !

× × ×

ସଙ୍ଗୀତ, ମୃଗୟା, ପକ୍ଷୀ, ନିଶା, ପଶା—
ଖେଳ କଲ ତୁମ୍ଭେ ଜୀବନ ବ୍ୟବସା,

× × ×

କାଠିଲିଗି, ନୀତ, ମଣୋହି ପହଡ଼
ଦେଖାଇଦେଲ ତୁମ୍ଭେ ନରମଧ୍ୟେ ବଡ଼ ?

× × ×

ନୀତ ସାରୁଁ ସାରୁଁ ଦିନଅନ୍ତ ନାହିଁ
ଧର୍ମ ଅର୍ଜିବାକୁ ଅବସର କାହିଁ ?
ଗ୍ରାମ୍ୟାମୋଦ ପଙ୍କେ ଶୂକର ପରାୟେ
ପାଣ୍ଡି ହେଉଥିବ କେତେଦିନ ଯାଏ ?

× × ×

ବାସ୍ତବ୍ୟେ ନବାବ ପ୍ରଜାଙ୍କର ଚକ୍ଷୁ,
ବିଦେଶୀ ସଙ୍ଗୀନେ କଲ ତାଙ୍କୁ ପ୍ରୀତ ।

× × ×

* ଦେହଲଗା ଭୃତ୍ୟମାନେ କବିଙ୍କର ଲକ୍ଷ୍ୟସ୍ଥଳ ।

ରାଜଧର୍ମ ହେଲା ପ୍ରଜା ଧନ ବୃଦ୍ଧି
ମନ୍ତ୍ରୀ ହେଲେ ଖଲ ଖଣ୍ଡ କାନକୁହା

× × ×

ରହିଥାଅ ଝାଙ୍କ କରି ଜରିମାନା
ଧନେ ପୁରାଇବା ଲାଗି ମାଲ ଖାନା,
ଧନର ଲାଲସା ଜାଗ୍ରତେ ସ୍ୱପନେ,
ଧନ ବିନୁ ନାହିଁ ଅନ୍ୟଚିନ୍ତା ମନେ,

× × ×

ଅକାରଣେ କମ୍ପା ଭଣ୍ଡି ଅରକ୍ଷିତ
ଅଳ୍ପ ଦିନ ପାଇଁ ସଞ୍ଚୁ ଅଛ ବିତ୍ତ,
ଗଣିକା, ଓକିଲ, ଗୁମୁଆ ପୋଷଣ
ଲାଗିକରି କମ୍ପା ପ୍ରଜାଙ୍କୁ ଶୋଷଣ ?"

ବାସ୍ତବରେ ଦେଶୀୟ ରାଜାମାନଙ୍କର କାର୍ଯ୍ୟାବଳୀ ସ୍ମରଣ କଲେ ପ୍ରଜାମାନଙ୍କୁ ବିଦେଶୀୟ ଶାସନର ପକ୍ଷପାତୀ ହେବାହେତୁ ଦୋଷ ଦିଆଯାଇ ନପାରେ । ରାଜାମାନେ କର୍ତ୍ତବ୍ୟଭ୍ରଷ୍ଟ ହୋଇ ଈଶ୍ୱରଙ୍କ ନିକଟରେ ପ୍ରତ୍ୟବାୟ ଗ୍ରସ୍ତହେଉ ଅଛନ୍ତି ଏବଂ ଗବର୍ଣ୍ଣମେଣ୍ଟଙ୍କ ନିକଟରେ ଲାଞ୍ଛିତ ହେଉ ଅଛନ୍ତି—କେହି କେହି କ୍ଷମତାଚ୍ୟୁତ ମଧ୍ୟ ହେଉ ଅଛନ୍ତି । ଦେଶୀୟ ରାଜାମାନଙ୍କର କର୍ତ୍ତବ୍ୟ ଜ୍ଞାନର ଅଭାବ, ବିଳାସପରାୟଣତା ଏବଂ ଅର୍ଥଗୃଧ୍ନୁତା ଅବନତିର ସରଳ ସୋପାନ । ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ରାଜତ୍ୱ କାଳରେ ଦେଶୀୟ ରାଜାମାନେ ଏପରି ଭାବରେ ଆଉ ଅଧିକ ଦିନ ନିରାପଦରେ କଟାଇ ପାରିବେ ନାହିଁ । ସେମାନେ ସୁଶିକ୍ଷିତ ଏବଂ କର୍ତ୍ତବ୍ୟନିଷ୍ଠ ହୋଇ ସୁଖ୍ୟାତି ଅର୍ଜନ କରନ୍ତୁ ଏହା ଆମ୍ଭମାନଙ୍କର ଆନ୍ତରିକ ଇଚ୍ଛା । ଆଜିକାଲି ଉତ୍କଳର ଅନେକଗୁଡ଼ିଏ ରାଜପୁତ୍ର ଶିକ୍ଷା ଗ୍ରହଣ କରୁଅଛନ୍ତି, ଆଶାକରୁଁ ସେମାନେ ସୁଶିକ୍ଷା ଲାଭ କରି ସୁନିୟମରେ ରାଜ୍ୟଶାସନ କରିବାକୁ ସକ୍ଷମ ହେବେ । ଆମ୍ଭେମାନେ ଦେଶୀୟ ନୃପତିମାନଙ୍କର ଏକାନ୍ତ ଶୁଭାକାଙ୍‌କ୍ଷୀ ଥିବାରୁ ସେମାନଙ୍କର ଶିକ୍ଷା ସୌକାର୍ଯ୍ୟାର୍ଥ ରାଜନୀତି ସମ୍ବନ୍ଧୀୟ କେତେଗୁଡ଼ିଏ ସାରବାନ୍ ଉପଦେଶ ସଂଗ୍ରହ କରି ପ୍ରକାଶ କରୁଅଛୁଁ । ଭରସା କରୁଁ ସେମାନେ ଆମ୍ଭମାନଙ୍କର ଉପରୋକ୍ତ ଅପ୍ରିୟ ସତ୍ୟକଥାରେ କ୍ଷୁବ୍ଧ ନହୋଇ ଉପଦେଶ ବାକ୍ୟଗୁଡ଼ିକ ନିଜ ନିଜ ଜୀବନର ବ୍ୟବହାରରେ ଲଗାଇବାକୁ ପରାଙ୍‌ମୁଖ ହେବେ ନାହିଁ—

## ଦାଦୋଜୀକୋଣ୍ଡଦେବଙ୍କର ଉପଦେଶ—

ଦାଦୋଜୀକୋଣ୍ଡଦେବ ଜାତିରେ ବ୍ରାହ୍ମଣ, ସେ ପୁନା ପ୍ରଦେଶର ଅନ୍ତର୍ଗତ ଶିଉରର ସନ୍ନିକଟ ମଲଥନ ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଶାହାଜୀ ଆପଣାର ପୁତ୍ର ଶିବାଜୀଙ୍କ ଶିକ୍ଷା ଏବଂ ଆପଣାର ଜାଗିର ଶାସନ ସକାଶେ ଦାଦୋଜୀକୋଣ୍ଡଦେବଙ୍କୁ ନିଯୁକ୍ତ କରିଥିଲେ । ତାଙ୍କର ଉପଦେଶାବଳୀ ଶିବାଜୀଙ୍କୁ ଶୈଶବକାଳରୁ ଭାରତର ଶୋଚନୀୟ ଅବସ୍ଥା ପରିବର୍ତ୍ତନ ଏବଂ ହିନ୍ଦୁ ସାମ୍ରାଜ୍ୟ ସଂସ୍ଥାପନର ଆଶା କରିବାକୁ ଶିକ୍ଷା ଦେଉଥିଲା, ଶିବାଜୀରୂପ ଉର୍ବର କ୍ଷେତ୍ରରେ ଦାଦୋଜୀଙ୍କର ଉପଦେଶରୂପ ଅତ୍ୟୁତ୍ତମବୀଜ ପତିତ ହୋଇ କାଳେ ସୁସ୍ନିଗ୍ଧ ଶ୍ୟାମଳପତ୍ର ଓ ଫଳପୁଷ୍ପଯୁକ୍ତ ବୃହଦବୃକ୍ଷରେ ପରିଣତ ହେଲା । ବହୁଳ ଜ୍ଞାନ ସମ୍ପନ୍ନ, ଅସାଧାରଣ ବୁଦ୍ଧିମାନ, ଅପକ୍ଷପାତୀ ବିଚାରକ, କଠୋର ନୈତିକ ପୁରୁଷ ଦାଦୋଜୀକୋଣ୍ଡଦେବ ସ୍ୱକୀୟ ମୃତ୍ୟୁ ଅସନ୍ନବର୍ତ୍ତୀ ଅବଗତ ହୋଇ ଶିବାଜୀଙ୍କୁ ଡକାଇ ନିମ୍ନଲିଖିତ ଉପଦେଶ ମାନ ପ୍ରଦାନ କରିଥିଲେ ।

"ଦେଖ ଶିବ ! ମୃତ୍ୟୁ ମୋହୋର ଆସନ୍ନବର୍ତ୍ତୀ । ମୋତେ ଶୀଘ୍ର ଇହଲୋକ ପରିତ୍ୟାଗ କରି ଅପର ଲୋକକୁ ଗମନ କରିବାକୁ ହେବ । ମୁଁ ପୃଥିବୀ ମଧ୍ୟରେ ଦୀର୍ଘକାଳ ନାନା ଅବସ୍ଥା ଭୋଗ କରି ଯେଉଁ ଅଭିଜ୍ଞତା ଲାଭକରି ଅଛି ତଦନୁସାରେ କାର୍ଯ୍ୟ କଲେ ତୁମ୍ଭେ ଇହକାଳ ଓ ପରକାଳରେ ଶ୍ରେୟଃଲାଭ କରିବାକୁ ସମର୍ଥ ହେବ । ତୁମ୍ଭେ ଅତିପ୍ରତ୍ୟୁଷରେ ଶଯ୍ୟାରୁ ଗାତ୍ରୋତ୍ଥାନ କରି ଜଗତ୍ପିତା ଜଗଦୀଶ୍ୱରଙ୍କର ନାମସ୍ମରଣ ପୂର୍ବକ ଆପଣାକୁ ଏହି କ୍ଷଣବିଧ୍ୱଂସୀ ସଂସାରର ଅନ୍ତର୍ଗତ ବିବେଚନା କରି ସୁଖ ଓ ଦୁଃଖରେ ଅବିକମ୍ପିତ ଭାବରେ କାର୍ଯ୍ୟ କରିବାକୁ ଆରମ୍ଭ କରିବ । କେବେହେଁ କ୍ରୋଧ ବା ମୋହର ବଶୀଭୂତ ହୋଇ ପକ୍ଷପାତ କରି ବିଚାର କରିବ ନାହିଁ କିମ୍ବା ଏକପକ୍ଷ ଶ୍ରବଣ କରି ମତପ୍ରଦାନ ଅଥବା ସତ୍ୟ ପରିତ୍ୟାଗ କେବେହେଁ କରିବ ନାହିଁ, ସତ୍ୟହିଁ ସକଳ ଧର୍ମର ସାର । ସର୍ବଦା ସ୍ମରଣ ରଖିବ ଯେ ସତ୍ୟ ସୀମାବଦ୍ଧ ଏବଂ ମିଥ୍ୟା ଅସୀମ, ସୁତରାଂ ମିଥ୍ୟା ବକ୍ତାର ଇଚ୍ଛାଅନୁସାରେ ବର୍ଦ୍ଧିତ ହୁଏ । କେବେହେଁ ଅହଙ୍କାରୀ ହୁଅ ନାହିଁ, ସର୍ବଗୁଣ ସମ୍ପନ୍ନ ହୋଇ ସୁଦ୍ଧା ଅହଙ୍କାରୀ ହେଲେ ତାହାକୁ ସମସ୍ତେ ଘୃଣା କରନ୍ତି । ବିଚାର ସ୍ଥଳରେ ସ୍ୱୀୟମତ ସ୍ଥାପନ ସକାଶେ ଦୁରାଗ୍ରହୀ ହେବ ନାହିଁ, କାରଣ ତୁମ୍ଭର ଭ୍ରାନ୍ତିଥିବାର ଅସମ୍ଭବ ନୁହେଁ । ମୁଁ ସବୁ ଜାଣେ, ଏପରି ଭାବ କେବେହେଁ ବାକ୍ୟ ଏପରିକି ଆକାର ଇଙ୍ଗିତରେ ସୁଦ୍ଧା ପ୍ରକାଶ କରିବ ନାହିଁ, ବୁଦ୍ଧିମାନ ବ୍ୟକ୍ତି ପକ୍ଷରେ ଏହା ଅତ୍ୟନ୍ତ ନିନ୍ଦନୀୟ ଦୋଷ । ଖୋସାମଦକାରମାନଙ୍କ କଥାରେ ଉଲ୍ଲସିତ ହେବ ନାହିଁ, ଧନବାନମାନଙ୍କର ଏମାନେ ପରମ ଶତ୍ରୁ । ଯଥାର୍ଥବାଦୀ ପଣ୍ଡିତମାନଙ୍କୁ ସମ୍ମାନ ଏବଂ ଅର୍ଥ ଦେଇ ପୂଜା କରିବ, ଯେହେତୁ

ସେମାନେ ଯଥାର୍ଥ ମିତ୍ର । ସାଧ୍ୟାନୁସାରେ ଦେଶପର୍ଯ୍ୟଟନ କରିବ ଏବଂ ପ୍ରତ୍ୟେକ ବିଷୟ ସୂକ୍ଷ୍ମ ରୂପେ ଅଧ୍ୟୟନ କରିବ; ଅନ୍ୟଥା ଦେଶପର୍ଯ୍ୟଟନର ଫଳ ପାଇବ ନାହିଁ । ସୂକ୍ଷ୍ମଦର୍ଶୀ ଦେଶ ପର୍ଯ୍ୟଟକଙ୍କ ନିକଟରୁ ତତ୍ତ୍ୱସକଳ ଅବଗତ ହେବ, ନିଜର ଦେଶ ସହିତ ଅପର ଦେଶର ତୁଳନା କରିବାକୁ କହିବ ଏବଂ ଉତ୍କର୍ଷାପ-କର୍ଷ ମନୋଯୋଗର ସହିତ ଶ୍ରବଣ କରିବ । ଭୋଜନ ଓ ପରିଧାନ ବିଷୟରେ ଅମିତ କେବେହେଁ ଆଡ଼ମ୍ବର କରିବ ନାହିଁ, ଏହା ମୂର୍ଖମାନଙ୍କୁ ଶୋଭାପାଏ । ଭାଙ୍ଗ, ଗଞ୍ଜେଇ, ମଦ୍ୟ ପ୍ରଭୃତି ମାଦକ ଦ୍ରବ୍ୟଠାରୁ ଅତି ଦୂରରେ ଅବସ୍ଥାନ କରିବ, ଏସବୁ ପଦାର୍ଥ ମନୁଷ୍ୟର ପାପପ୍ରବୃତ୍ତି ସବୁକୁ ବୃଦ୍ଧି କରିଥାନ୍ତି । ଶାସ୍ତ୍ରରେ ଏସବୁ ଅଦେୟ, ଅପେୟ ଏବଂ ଅଘ୍ରେୟ ବୋଲି ଉଲ୍ଲିଖିତ ହୋଇଅଛି । ପରସ୍ତ୍ରୀ ସଂସର୍ଗରୁ ଆପଣାକୁ ବିଶେଷ ରୂପେ ରକ୍ଷାକରିବ । ପୃଥିବୀ ମଧ୍ୟରେ ଯଦି କୌଣସି ମହାପାପ ଥାଏ ତାହାହେଲେ ମାଦକ ସେବନ ଓ ପର ସ୍ତ୍ରୀ ଗମନ ଅପେକ୍ଷା ଗୁରୁତର ମହାପାପ ଆଉ କିଛି ଥିବାର ଉପଲବ୍ଧି ହୁଅଇ ନାହିଁ, ଏହା ମନୁଷ୍ୟ-ମାନଙ୍କର ଶାରୀରିକ ଓ ମାନସିକ ଉଭୟ ପ୍ରକାର ଉତ୍କଟ ବ୍ୟାଧି ଆନୟନ କରି ଆତ୍ମହତ୍ୟା ସାଧନ କରିଥାଏ । ଆତ୍ମହତ୍ୟା ଅପେକ୍ଷା ଗୁରୁତର ପାପ ଆଉ କଅଣ ଅଛି ? ଆହାର ନିଦ୍ରା ପ୍ରଭୃତି କାର୍ଯ୍ୟ ଯେତେ ହ୍ରାସ କରିପାରି ସେତେ ଶୁଭ-ଜନକ । ଅପରିମିତ ଭୋଜନ କରିବ ନାହିଁ, ଅଜୀର୍ଣ୍ଣ ସକଳ ରୋଗର ମୂଳ । ଆହାର କରିବା ମାତ୍ରେ ଦଶକ୍ରୋଶ ଦୌଡ଼କ ଉପରେ ଅକ୍ଲେଶରେ ଗମନ କରିପାରି ଏପରି ଭାବରେ ଭୋଜନ କରିବ । ଅତି କ୍ଷୁଦ୍ରତମ କାର୍ଯ୍ୟର ଭାର ସୁଦ୍ଧା କାହାର ଉପରେ ନ୍ୟସ୍ତକରି ନିଶ୍ଚିନ୍ତ ହେବ ନାହିଁ; ସ୍ୱୀୟ ଚକ୍ଷୁରେ ତାହା ଦେଖିବାକୁ ଅଭ୍ୟାସ କରିବ । ଯେତେ ଧାରଣା କରିବ ସେତିକି ଧାରଣ ଶକ୍ତି ବୃଦ୍ଧି ହେବ ।

ଅଧୀନସ୍ଥ ବ୍ୟକ୍ତିର କ୍ଷମଣୀୟ ଅପରାଧ ହେଲେ ତାହାର ବୃତ୍ତିଚ୍ଛେଦ କରିବ ନାହିଁ; ତାହାକୁ ଅନ୍ୟ ପ୍ରକାର ଦଣ୍ଡ ପ୍ରଦାନ କରିବ । ଏକପ୍ରକାର ଅପରାଧରେ ଲୋକଭେଦରେ ଦଣ୍ଡଭେଦ କରିବା ଉଚିତ, କାରଣ କାହାରି ପକ୍ଷରେ ବାକ୍‌ଦଣ୍ଡ ପ୍ରାଣଦଣ୍ଡ ଅପେକ୍ଷା କ୍ଳେଶ କର । ରାଜାହିଁ ପ୍ରଜାର ପିତା ଓ ମାତା, ଅତଏବ ପିତାମାତାଙ୍କପରି ପ୍ରଜାର ସକଳ ପ୍ରକାର ଉନ୍ନତିର ଚେଷ୍ଟା କରିବ । ପ୍ରଜା, ଜ୍ଞାନ ଓ ଧନବାନ ହେଲେ ରାଜାଙ୍କର କଲ୍ୟାଣ ସାଧିତ ହୁଏ । ଯେ ରାଜାର ପ୍ରଜା ଦରିଦ୍ର ଓ ମୂର୍ଖ ସେ ରାଜପଦର ଉପଯୁକ୍ତ ନୁହନ୍ତି । ଆୟକୁ ବୁଝିହିଁ ବ୍ୟୟ କରିବ । କେବେହେଁ ମନର ଆବେଗ ବଶତଃ ବହୁ ବ୍ୟୟ କରିବ ନାହିଁ, କୃପଣ ପରି ସଞ୍ଚୟ କରିବ ଏବଂ ଯଥାକାଳରେ ବିରକ୍ତ ପରି ବ୍ୟୟ କରିବ । ନିଃସ୍ୱ ଶତ୍ରୁସ୍ୱକାଳ

ଉଦାରତା ପ୍ରଦର୍ଶନର ସମସ୍ତ ନୁହେଁ ଏସମସ୍ତରେ କାଠିନ୍ୟ ଅବଲମ୍ବନ କରିବା ଉଚିତ । ବିଷୟ ବାସନା ଚରିତାର୍ଥ ସକାଶେ ରାଜାଙ୍କର, ଏକ କପର୍ଦ୍ଦକ ପ୍ରକାର ଅର୍ଥହିଁ ବ୍ୟୟ କରିବା ଉଚିତ ନୁହେଁ, ଅନ୍ୟଥାଚରଣ କଲେ ସେ ଏଥିସକାଶେ ଈଶ୍ୱରଙ୍କ ନିକଟରେ ପ୍ରତ୍ୟବାୟ ଗ୍ରସ୍ତ ହୁଅନ୍ତି । ଯେକୌଣସି ପ୍ରକାର ଦୁରବସ୍ଥାରେ ପତିତହେଲେ ସୁଦ୍ଧା ଭଗ୍ନହୃଦୟ ନହୋଇ ସନ୍ତୁଷ୍ଟ ଥିବ ଏବଂ ସ୍ଥିରଭାବରେ ଯୋଗ୍ୟ ଦୂର କରିବାକୁ ଯତ୍ନବାନ ହେବ । କାର୍ଯ୍ୟ ପୂର୍ଣ୍ଣ ହେବାର ପୂର୍ବେ ଯେପରି ମନ୍ତ୍ରଣା ପ୍ରକାଶ ନପାଏ ସେ ବିଷୟରେ ବିଶେଷ ଲକ୍ଷ ରଖିବ । କୌଣସି କୌଣସି ରାଜନୈତିକ ପଣ୍ଡିତ କହି ଅଛନ୍ତି "ଯଦି ଆମ୍ଭର ଶତ୍ରୁ କୌଣସି ପ୍ରକାରେ ମନର ଭାବ ଅବଗତ ହୁଏ ତାହାହେଲେ ଆମ୍ଭେ ତାହା ଉତ୍ପାଟନ କରିବୁଁ ।" ମୁଁ କିନ୍ତୁ ସବୁ ସମୟରେ ଏତେଦୂର କଠୋର ହେବା ସକାଶେ ଉପଦେଶ ଦେଉ ନାହିଁ, ବିଶ୍ୱସ୍ତ ବୁଦ୍ଧିମାନ ବ୍ୟକ୍ତି ସହିତ ମତମିଳନ କରିବା ଉଚିତ । ରାଜା ସର୍ବଗୁଣ ସମ୍ପନ୍ନ ହେଲେ ସୁଦ୍ଧା ସୁମନ୍ତ୍ରୀର ଆବଶ୍ୟକ । ଯେପରି ନୌକାରେ କର୍ଣ୍ଣଧାର ଥିଲେ ସୁଦ୍ଧା ତାହା କ୍ଷେପକର ସାହାଯ୍ୟରେ ଅବଲୀଳାକ୍ରମେ ଉର୍ମିରାଜି ଭେଦକରି ଗନ୍ତବ୍ୟ ସ୍ଥାନକୁ ଗମନ କରେ, ସେହିପରି ରାଜା ସୁମନ୍ତ୍ରୀର ସାହାଯ୍ୟରେ ଅନୁଦ୍ବେଗରେ ବାଧାବିପତ୍ତି ଅତିକ୍ରମ କରି ପରମ ସୌଭାଗ୍ୟ ଲାଭ କରନ୍ତି । ଆପଣାର ସ୍ୱାର୍ଥ ସକାଶେ ଦେଶର ସ୍ୱାର୍ଥ ଉପରେ କୌଣସି ପ୍ରକାରେ ଆଘାତ ପ୍ରଦାନ କରିବ ନାହିଁ, ଏ ବିଷୟରେ ବିଶେଷ ରୂପେ ମନୋଯୋଗୀ ହେବ । ଯେସବୁ କୁଳାଙ୍ଗାର ନିଜର ସ୍ୱାର୍ଥ ସକାଶେ ଦେଶର ସ୍ୱାର୍ଥ ବଳି ପ୍ରଦାନ କରନ୍ତି, ସେହିସବୁ ନରରାକ୍ଷସ ଚିର କାଳ ମନୁଷ୍ୟ ସମାଜ କର୍ତ୍ତୃକ ଧିକ୍‌କୃତ ହୋଇଥାନ୍ତି । ମହାଭାରତ, ରାମାୟଣ ପ୍ରଭୃତି ଗ୍ରନ୍ଥରେ ଅନେକ ବଦାନ୍ୟ ମହାତ୍ମା ଓ ବୀରମାନଙ୍କର ଚରିତ ବର୍ଣ୍ଣିତ ଅଛି । ତନ୍ମଧ୍ୟରେ ସଭା, ବିରାଟ, ବନ, ଉଦ୍ୟୋଗ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଗଦା ଓ ଶାନ୍ତି ପର୍ବ ଏକମନରେ ପ୍ରତିଦିବସ କିଛି କିଛି ଶ୍ରବଣ କରିବ । ବିଦେଶୀୟ ଇତିହାସ ଓ ବୀର ପୁରୁଷମାନଙ୍କର ଚରିତ ଶ୍ରବଣ କରିବା ଉଚିତ । କେଉଁଦେଶ ହୀନାବସ୍ଥାରୁ କଉପାୟରେ ଉନ୍ନତିଲାଭ କରିଅଛି ଏବଂ କେଉଁ କେଉଁ କାରଣରୁ ବା ଅବନତି ପ୍ରାପ୍ତହୋଇଅଛି ସେହିସବୁ କଥା ସର୍ବଦା ମନୋଯୋଗର ସହିତ ଚିନ୍ତା କରିବ, କେଉଁ ମହାତ୍ମା ସମ୍ପୂର୍ଣ୍ଣରୂପେ ଶତ୍ରୁଗଣ ପରିବେଷ୍ଟିତ ହୋଇ କି ଉପାୟ ଅବଲମ୍ବନ କରି ବିପଦରୁ ଉଦ୍ଧାର ଲାଭକରି ଥିଲେ । କିପରି ବା ମୁଷ୍ଟିମେୟ ଅଶିକ୍ଷିତ ସୈନ୍ୟସେନ ସେନାପତିମାନେ ସୁଶିକ୍ଷିତ ସେନାଦଳ ପରାସ୍ତ କରିଥିଲେ ଇତ୍ୟାଦି ବିଷୟ ବିଶେଷ ଆଗ୍ରହର ସହିତ ଶ୍ରବଣ କରିବ । ଯେହେତୁ ଇତିହାସହିଁ ଏକମାତ୍ର ମନୁଷ୍ୟମାନଙ୍କୁ ସକଳ କର୍ମରେ ଉପଯୁକ୍ତ ହେବାପାଇଁ ଶିକ୍ଷା ପ୍ରଦାନକରେ । ଯଦି କାହାରି ରାଜନୈତିକ ପଣ୍ଡିତ

ହେବାର ବାସନାଥାଏ ତାହାହେଲେ ତାହର ଇତିହାସ ଅଧ୍ୟୟନ କରିବା ଉଚିତ । ଯଦି କାହାର ଯୋଦ୍ଧା ହେବାର ଇଚ୍ଛାଥାଏ ତାହାହେଲେ ତାହାର ଇତିହାସ ପାଠକରିବା ଉଚିତ । ଅଧିକ କଅଣ କହିବି । ଇତିହାସ ହିଁ ଜ୍ୱଳନ୍ତ ଉଦାହରଣର ସହିତ ଦର୍ଶନ ଶାସ୍ତ୍ର, ପିତାମାତାଙ୍କୁ ମନୁଷ୍ୟ ରୂପଧାରୀ ଦେବତା ବୋଲି ଜ୍ଞାନ କରିବ । ସେମାନଙ୍କର ଇଚ୍ଛାର ବିପରୀତ ମନେମନେ ଚିନ୍ତାକରିବା ମଧ୍ୟ ପାପଜନକ । କେବେହେଁ ସେମାନଙ୍କର ବିପରୀତାଚରଣ କରିବ ନାହିଁ । କେହି ତୁମ୍ଭ ନିକଟକୁ କୌଣସି ବିଷୟ ଆଶାକରି ଆଗମନକଲେ ଏକାବେଳକେ ତାହାର ଆଶା ସମୂଳରେ ଉନ୍ମୂଳିତ କରିବ ନାହିଁ, ବାସନା ପୂର୍ଣ୍ଣକରି ନ ପାରିଲେ ମଧୁର ସମ୍ଭାଷଣଦ୍ୱାରା ତାହାର ମନକୁ ପ୍ରବୋଧିତ କରିବ ସ୍ୱପ୍ନରେସୁଦ୍ଧା କାହାରିପ୍ରତି କଟୂକ୍ତିପଣ କରିବ ନାହିଁ । ଯୁଦ୍ଧନିହତ ସୈନ୍ୟମାନଙ୍କର ସ୍ତ୍ରୀ ପୁତ୍ର ପ୍ରଭୃତି ଆତ୍ମୀୟ ସ୍ୱଜନମାନଙ୍କୁ ପ୍ରତିପାଳନ କରିବ ; ଏତଦ୍ୱାରା ସୈନ୍ୟମାନଙ୍କର ମନ ପ୍ରଭୂଭକ୍ତି ପ୍ରବଣ ହୁଏ । ଚରଦ୍ୱାରା ସ୍ୱୀୟ ଓ ପର ରାଜ୍ୟର ପ୍ରଧାନ ପ୍ରଧାନ ବ୍ୟକ୍ତି ଏବଂ ଜନସାଧାରଣଙ୍କର ଅଭିପ୍ରାୟ ଅବଗତ ହେବ । ନିଜେମଧ୍ୟ ସମୟେ ସମୟେ ଗୁପ୍ତରୂପେ ସମସ୍ତଙ୍କର ଆଭ୍ୟନ୍ତରିକ ଚରିତ୍ର ଅବଗତହେବ । ଶତ୍ରୁମାନଙ୍କୁ ପରାଜୟକରି ସେମାନଙ୍କ ପ୍ରତି ଅତ୍ୟାଚାର କରିବ ନାହିଁ, ଆହତ ଶତ୍ରୁମାନଙ୍କୁ ଶୁଶ୍ରୂଷା, ଔଷଧ ଓ ପଥ୍ୟପ୍ରଦାନ ଏବଂ ଆରୋଗ୍ୟକରି ସବିଶେଷ ପ୍ରଶଂସାପୂର୍ବକ ବିଦାୟ ପ୍ରଦାନକରିବ । ତୁମ୍ଭକୁ ଅଧିକ ଆଉ କଅଣ କହିବି, ସର୍ବଦା ଦେଶକାଳ ଓ ପାତ୍ର ବିବେଚନାକରି କାର୍ଯ୍ୟକରିବ ଏବଂ ଧର୍ମପଥରୁ କେବେହେଁ ବିଚ୍ୟୁତ ହେବ ନାହିଁ । ପ୍ରଜା ଯେକୌଣସି ଜାତି ହେଉ ପଛକେ ସେମାନଙ୍କୁ ପୁତ୍ରନିର୍ବିଶେଷରେ ପାଳନ କରିବ । ସେମାନଙ୍କ ଧର୍ମ ଉପରେ କେବେହେଁ ଆଘାତ କରିବନାହିଁ, କାରଣ ରାଜା ଧର୍ମସ୍ୱରୂପ, ତୁମ୍ଭକୁ ଗୋଟିଏ କଥାକହିବି, ବିଷୟଟି ପାଳନକରିବା ପାଇଁ ବିଶେଷ ଯତ୍ନବାନ ହେବ—କୁସଂସର୍ଗରୁ ଆପଣାକୁ ଯତ୍ନର ସହିତ ରକ୍ଷାକରିବ । ପୁସ୍ତକ ମୂର୍ଖର ହସ୍ତଗତ ହେଲେ ତାହାର ସଦ୍‌ଗୁଣରାଜି ଯେପରି ଘୋର ତମସାବୃତହୁଏ, ସେହିପରି ଅସତ୍‌ସଂସର୍ଗ ମାନବମନକୁ ତମସାଚ୍ଛନ୍ନ କରିପକାଏ । ତୁମେ ଯେ କାର୍ଯ୍ୟକରିବା ସକାଶେ ବଦ୍ଧପରିକର ହୋଇଅଛ ଏହା ଅପେକ୍ଷା ଶ୍ରେଷ୍ଠତରକାର୍ଯ୍ୟ ଆଉ ନାହିଁ, ତୁମ୍ଭେ ଗୋ, ବ୍ରାହ୍ମଣ ଓ ଦେଶର କଲ୍ୟାଣାର୍ଥ ଆତ୍ମୋତ୍ସର୍ଗ କରିଅଛ ଏହା ଅପେକ୍ଷା ଅଧିକତମ ସନ୍ନ୍ୟାସ କି ହୋଇପାରେ ? ତୁମ୍ଭର ଏହି ମଙ୍ଗଳମୟ କାର୍ଯ୍ୟରେ ପରମ ମଙ୍ଗଳମୟ ପରମେଶ୍ୱର ସହାୟ ହେଉନ୍ତୁ । ତୁମ୍ଭକୁ ଏହି ପରମକଲ୍ୟାଣ କର କାର୍ଯ୍ୟରେ ନାନାପ୍ରକାର ଅଭାବନୀୟ ବିପଦ କ୍ଲେଶ ଓ ଦୁଃଖରେ ପତିତହେବାକୁ ପଡ଼ିବ, ସାବଧାନ ସେହି ସକଳ ପରୀକ୍ଷାସ୍ଥଳରେ କଦାଚ ମ୍ରିୟମାଣ ହେବ ନାହିଁ,

ପରମେଶ୍ୱରଙ୍କଠାରେ ଏକାଗ୍ରଚିତ୍ତହେବ । ତାଙ୍କ କୃପାରେ ସକଳପ୍ରକାର ବାଧାବିପତ୍ତି ଅତିକ୍ରମ କରିବାକୁ ସମର୍ଥହେବ । କର୍ତ୍ତବ୍ୟକର୍ମ ବୋଧରେ କାର୍ଯ୍ୟ କରିବ, କର୍ମ ସଫଳ ବା ବିଫଳ ହେଲେ ତହିଁରେ ସୁଖୀ କିମ୍ବା ଦୁଃଖିତ ହେବନାହିଁ—ଏପରି ଅଭ୍ୟାସ କରିବାକୁ ଯତ୍ନବାନ ହେବ ।"

## ମଦାଳସାଙ୍କର ଉପଦେଶ—

ମାର୍କଣ୍ଡେୟପୁରାଣ ପାଠକଲେ ଜଣାଯାଏ ଯେ ପୂର୍ବ କାଳରେ ଋତଧ୍ୱଜ ନାମରେ ଜଣେ ନରପତି ଥିଲେ ସେ ଗନ୍ଧର୍ବ ରାଜଦୁହିତା ମଦାଳସାଙ୍କର ପାଣିଗ୍ରହଣକରି ଥିଲେ । ମଦାଳସା ଅତ୍ୟନ୍ତ ଧାର୍ମିକାରମଣୀ ଥିଲେ । ସେ ନିଜର କନିଷ୍ଠପୁତ୍ର ଅଲର୍କଙ୍କୁ ନିମ୍ନୋକ୍ତ ସାରବାନ ଉପଦେଶ ପ୍ରଦାନ କରିଥିଲେ,—

"ବତ୍ସ ! ରାଜ୍ୟାଭିଷିକ୍ତ ହୋଇ ପ୍ରଥମତଃ ପ୍ରଜାନୁରଞ୍ଜନ କାର୍ଯ୍ୟରେ ରତହେବ । ଧାର୍ମିକ ରାଜାମାନଙ୍କ ପକ୍ଷରେ ପ୍ରଜାନୁରଞ୍ଜନ ହିଁ ପରମଧର୍ମ । ରାଜନୀତି ଓ ଧର୍ମନୀତି ଏ ଦୁଇଟି ପୃଥକ ବସ୍ତୁ, କିନ୍ତୁ ପ୍ରକୃତ ଧାର୍ମିକ ବ୍ୟକ୍ତିମାନେ ଏହି ପାର୍ଥକ୍ୟ ଦୂର କରିବାସକାଶେ ସର୍ବଦା ଯତ୍ନବାନ । ଯେଉଁଠାରେ ସ୍ୱାର୍ଥ ସେଠାରେ ଧର୍ମର ଅଭାବ । ତୁମ୍ଭେ ସର୍ବଦା ନିଃସ୍ୱାର୍ଥହୋଇ କାର୍ଯ୍ୟକରିବ ତାହାହେଲେ ରାଜନୀତି ଓ ଧର୍ମନୀତିରେ ପାର୍ଥକ୍ୟରହିବ ନାହିଁ । ଅକ୍ଷକ୍ରୀଡ଼ା, ଦିବାନିଦ୍ରା, ବୃଥାଭ୍ରମଣ, କୌଣସି ପ୍ରକାର ଅବସାଦକ ପାନୀୟଦ୍ରବ୍ୟ ପାନ, ବିସଦ୍ୟାଣକ୍ତି, ପରନିନ୍ଦା, ବ୍ୟଭିଚାର, ସ୍ତ୍ରୀ ବା ମୃଗୟାରେ ଅନୁରକ୍ତି ଇତ୍ୟାଦି ବ୍ୟସନଜ ଦୋଷ ସର୍ବଦା ପରିତ୍ୟାଜ୍ୟ, ଅମ୍ଭାକୁ କାମାଦି ରିପୁହସ୍ତରୁ ରକ୍ଷାକରିବ । ମନ୍ତ୍ରଣାଦ୍ୱାରା ରାଜ୍ୟ ଏବଂ ସର୍ବଶସ୍ତ୍ର ଅନୁଚରଦ୍ୱାରା ଶରୀର ରକ୍ଷାକରିବ । ସର୍ବଦା ମନ୍ତ୍ରଣା ଗୋପନ କରିବାକୁ ଚେଷ୍ଟାକରିବ । ଯଦି ରାଜା ଆପଣାର ମନ୍ତ୍ରଣା ଗୋପନ କରିବାକୁ ଶିକ୍ଷା ନ କରନ୍ତି ତେବେ ସେ ଚକ୍ରହୀନ ରଥପରି ପଦେପଦେ ବିପଦ୍‌ଗ୍ରସ୍ତ ହୁଅନ୍ତି । ଗୁପ୍ତଚରଦ୍ୱାରା ଅମାତ୍ୟାଦିଙ୍କର ଚେଷ୍ଟା ଅବଗତ ହେବ । ତୁମ୍ଭର କୌଣସି ଅମାତ୍ୟ ଯଦ୍ୟପି ବିଦ୍ରୋହୀହୋଇ ଉଠେ, ତାହାହେଲେ ତାହାର ସଙ୍ଗେ ଏପରି ସଦ୍‌ବ୍ୟବହାର କରିବ ଯହିଁରେ ସେ ତୁମ୍ଭର ଅନିଷ୍ଟ ଚିନ୍ତାରୁ ବିରତ ହେବ । ଜ୍ଞାତିପ୍ରଭୃତି ବନ୍ଧୁମାନଙ୍କୁ ବିଶ୍ୱାସ କରିବନାହିଁ ।

ଯେଉଁମାନେ ଲକ୍ଷ୍ମୀପ୍ରଭୃତି ସମ୍ବନ୍ଧରେ ଆବଦ୍ଧନୁହନ୍ତି କାର୍ଯ୍ୟକାଳରେ ସେମାନଙ୍କୁ ବିଶ୍ୱାସକରିବ । ସ୍ଥାନବୃଦ୍ଧି କ୍ଷୟଙ୍କ ଓ ଛ ପ୍ରକାର ଗୁଣଜ୍ଞ ଏବଂ ଗୁଣଗ୍ରାହୀ ଭୂପତି କାମର ବଶବର୍ତ୍ତୀ ହେବେନାହିଁ । ରାଜା ପ୍ରଥମତଃ ଆତ୍ମା ଅର୍ଥାତ୍ କାମାଦି ରିପୁମାନଙ୍କୁ, ପରେ ମନ୍ତ୍ରୀ ଏବଂ ଭୃତ୍ୟମାନଙ୍କୁ ଜୟକରିବେ । ଏ ସମସ୍ତ ଜିତହେଲେ ପୌରଜନମାନଙ୍କୁ ବଶୀଭୂତ କରିବେ । ଅନନ୍ତର ଶତ୍ରୁଜୟରେ ପ୍ରବୃତ୍ତହେବେ । ଯେଉଁରାଜା ଏସବୁ ଜୟ ନ କରି ଶତ୍ରୁଜୟରେ ପ୍ରବୃତ୍ତ ହୁଅନ୍ତି, ସେ ଆତ୍ମା ଓ ଅମାତ୍ୟ ବର୍ଗଦ୍ୱାରା ଅଭିଭୂତ ହୋଇ ଶତ୍ରୁଜୟରେ ଅକ୍ଷମ ହୁଅନ୍ତି । ଅତଏବ ହେ ପୁତ୍ର ! ପ୍ରଥମତଃ କାମାଦି ରିପୁମାନଙ୍କୁ ଜୟକରିବ । କାମାଦି ରିପୁ ଜିତହେଲେ ଅପରାପର ଶତ୍ରୁବର୍ଗ ଅଚିରେ ପରାଭୂତ ହେବେ । କାମ, କ୍ରୋଧ, ଲୋଭ, ମୋହମଦମାନ ଏବଂ ହର୍ଷ ଏମାନେ ରାଜାମାନଙ୍କର ବିନାଶକ । ଦେବ, ପାଣ୍ଡୁ କାମାସକ୍ତ ହୋଇ ବିନାଶପ୍ରାପ୍ତ ହେଲେ । ଅନୁହ୍ରାଦ କ୍ରୋଧବଶବର୍ତ୍ତୀ ହୋଇ ଆତ୍ମଜ ଦ୍ୱାରା ହତ ହେଲେ । ଐଳ ଓ ବେଣ ଲୋଭାକ୍ରାନ୍ତ ହୋଇ ବ୍ରାହ୍ମଣ କର୍ତ୍ତୃକ ବିନଷ୍ଟହେଲେ ! ଅଭିମାନରେ ବଳୀ ଏବଂ ଅତିହର୍ଷରେ ପୁରଞ୍ଜୟ ହତଶ୍ରୀ ହୋଇଥିଲେ । ମହାରଥୀ ଏହିସମସ୍ତ ଜୟକରି ସର୍ବଜୟୀହେଲାରୁ ଦେବତାମାନେ ତାହାଙ୍କୁ ରାଜସିଂହାସନରେ ଉପବିଷ୍ଟ କରି ସ୍ୱର୍ଗର ରାଜତ୍ୱ ପ୍ରଦାନ କଲେ । ନୃପତିମାନେ କାକ ନିକଟରୁ ମନ୍ତ୍ର ଗୁପ୍ତି, କୋକିଳ ନିକଟରୁ ସୁମିଷ୍ଟ ଭାଷା, ଭୃଙ୍ଗ ନିକଟରୁ ସାରଗ୍ରାହିତା ଏବଂ ମୃଗ ନିକଟରୁ କ୍ଷିପ୍ରହସ୍ତତା ଓ ସତର୍କତା ଶିକ୍ଷାକରିବେ ।

ଶତ୍ରୁସମକ୍ଷରେ କୀଟର କାର୍ଯ୍ୟାନୁକରଣ କରିବ ଏବଂ ସମୟରେ ପିପୀଲିକାପରି ସଚେଷ୍ଟହୋଇ କାର୍ଯ୍ୟ କୌଶଳ ପ୍ରଦର୍ଶନ କରିବ । କୀଟ ଯେପରି ଅତି ସଂଗୋପନରେ ଏବଂ ନିଃଶବ୍ଦରେ ବୃକ୍ଷର ତ୍ୱକ ମଧ୍ୟରେ ପ୍ରବିଷ୍ଟହୋଇ ସେହି ବୃକ୍ଷକୁ ଅସାରକରି ପକାଏ, ରାଜା ସେହିପରି ଶତ୍ରୁମାନଙ୍କର ବଳ ଓ ଶକ୍ତି ବୁଝି ଅତି ସଂଗୋପନରେ ଶତ୍ରୁ—ଛିଦ୍ର ଅନୁସନ୍ଧାନ ପୂର୍ବକ ଏପରି ଭାବରେ ସେମାନଙ୍କର ଅଭିସନ୍ଧିବୁଝି ଚଳିବେ ଯେପରି ମୃଣାକ୍ଷରରେ ସେମାନେ ତାଙ୍କର ଅଭିପ୍ରାୟ ବୁଝିପାରିବେ ନାହିଁ । ପିପୀଲିକା ଯେପରି କୌଣସି ଗୋଟିଏ କାର୍ଯ୍ୟ ଆରମ୍ଭକରି ତାହା ଶେଷନହେଲେ ତହିଁରୁ ବିରତ ହୁଏ ନାହିଁ, ଭୂପତିମାନଙ୍କୁ ଚେଷ୍ଟା ସମ୍ବନ୍ଧରେ ସେହିପରି କରିବାକୁହେବ । ଦେବରାଜଇନ୍ଦ୍ର ପୃଥିବୀକୁ ଉର୍ବର କରିବା ସକାଶେ ଯେପରି ଅବିଶ୍ରାନ୍ତ ମେଘ-ବାରି ବର୍ଷଣରେ ଧରାକୁ ଅଭିଷିକ୍ତ କରନ୍ତି, ଦିବାକର ସହସ୍ର ରଶ୍ମି ଦ୍ୱାରା ଭୂମିକୁ ଶସ୍ୟଶାଳିନୀ କରିବାସକାଶେ ଯେପରି ଉଦଧେଶ୍ୱରଙ୍କ ସିନ୍ଧୁଜଳ ଶୋଷଣ କରିଥାନ୍ତି, ମହିପତି କେବେକେବେ ସେହିପରି ଅଜସ୍ର ଅର୍ଥବର୍ଷଣରେ ପ୍ରଜାପୁଞ୍ଜର ମନସ୍ତୁଷ୍ଟିକରିତଃ ସେମାନଙ୍କର

ମଙ୍ଗଳବିଧାନ କରିବେ । ନ୍ୟାୟତଃ କରଗ୍ରହଣକରି ରାଜ୍ୟର ଉନ୍ନତି ସକାଶେ କୋଷଭଣ୍ଡାର ଧନପୂର୍ଣ୍ଣ କରିବେ । ଧର୍ମରାଜ ଯମ ଯେପରି ଅନ୍ୟାୟର ଅନୁରୋଧରେ ଯଥାକାଳରେ ଧାର୍ମିକ ଓ ଅଧାର୍ମିକ ଏହି ଉଭୟବିଧ ମାନବଙ୍କୁ ଗ୍ରହଣ କରିଥାନ୍ତି । ରାଜାମଧ୍ୟ ସେହିପରି ନ୍ୟାୟର ପକ୍ଷପାତୀହୋଇ ଦଣ୍ଡାର୍ହ ଜ ପ୍ରିୟ ଜ ଅପ୍ରିୟ ସମସ୍ତଙ୍କୁ ସମଭାବରେ ଦଣ୍ଡବିଧାନ କରିବେ । ବାୟୁ, ମାନବନେତ୍ର ଅନ୍ତରାଳରେ ଥାଇ ସୁଦ୍ଧା ସର୍ବତ୍ର ଗମନାଗମନ କରେ, ନରପତି ସେହିପରି ସ୍ୱୟଂ ଅଲକ୍ଷିତ ଭାବରେ ଥାଇ ଗୁପ୍ତଚରଦ୍ୱାରା ପ୍ରକୃତି ପୁଞ୍ଜ, ଅମାତ୍ୟ ଓ ବନ୍ଧୁବର୍ଗାଦିଙ୍କ ମନରଭାବ ଅବଗତ ହେବେ । ହେ ବତ୍ସ, ଯେ ରାଜାର ମନ ଲୋଭ କାମ ଓ ଅର୍ଥରେ ଅନାକୃଷ୍ଟ, ସ୍ୱର୍ଗଦ୍ୱାର ତାହାର ସକାଶେ ଉନ୍ମୁକ୍ତ ।”

---

# ପଟୋଳ ଚାଷ

ପଣ୍ଡିତ ନୀଳମଣି ବିଦ୍ୟାରତ୍ନ

ପଟୋଳ ଗୋଟିଏ ଉପାଦେୟ ତରକାରି ଫଳ । ବୈଦ୍ୟଶାସ୍ତ୍ରରେ ଏହାର ଲତା, ପତ୍ର, ଫଳ ଓ ମୂଳର ବହୁ ଉପକାରିତା ଲିଖିତ ଅଛି, ଯଥା—

"ପଟୋଳ ପତ୍ରଂ 'ପିତ୍ତଘ୍ନ' ନାଡ଼ୀତସ୍ୟ ଦଫାପହା । ପିତ୍ତଘ୍ନ
ଫଳଂତସ୍ୟ ତ୍ରିଦୋଷଘ୍ନ ମୂଳଂତସ୍ୟ ବିରେଚକଂ ॥"

ଅର୍ଥାତ୍ ପଟୋଳପତ୍ର ପିତ୍ତଦୋଷ ନିବାରକ, ଲତା କଫନାଶକ, ଫଳ ତ୍ରିଦୋଷଘ୍ନ ଏବଂ ମୂଳ ବିରେଚକ ଅଟେ । ପିତ୍ତଦୋଷ ନିବାରଣ କରିବାରୁ ପଟୋଳର ଆଉ ଗୋଟିଏ ନାମ ପିତ୍ତଘ୍ନ ହୋଇଅଛି । ପଟୋଳ ପତ୍ର ଜ୍ୱର ରୋଗର ପ୍ରଧାନ ପାଚନ । ଏହାର ଲତା, ପତ୍ର, ଫଳ ସମସ୍ତ ଖାଦ୍ୟ ମଧ୍ୟରେ ପରିଗଣିତ । ପଟୋଳର କଅଁଳ ଅଗକୁ ବଡ଼ି, ବାଇଗଣ ଓ କଦଳୀ ସଙ୍ଗରେ ପକାଇ ଝୋଳ କଲେ ବଡ଼ ଉପାଦେୟ ହୁଏ । ବିଶେଷତଃ ଜ୍ୱରକ୍ରାନ୍ତ ଲୋକର ଅରୁଚି ନାଶ କରେ । ପଟୋଳ ଫଳ ଗୋଟିଏ ଉତ୍କୃଷ୍ଟ ତରକାରି ଏହା ବୋଲିବା ବାହୁଲ୍ୟ ମାତ୍ର । ତାହାର ଭଜା ଅଧିକ ସ୍ୱାଦୁ ଲାଗେ । ଏ ହେତୁ ଦେଶୀୟ ପ୍ରବାଦ ଅଛି,

"ପଟୋଳ ଭଜା, ମା'ର ମଜା ।"

ବଙ୍ଗଦେଶରେ ପଟୋଳର ଚାଷ ଅପର୍ଯ୍ୟାପ୍ତ ହୁଏ । ନଦୀ କୂଳବର୍ତ୍ତୀ ପଟୁମାଟି ଏ ଚାଷ ପକ୍ଷରେ ପ୍ରଶସ୍ତ । ଓଡ଼ିଶାର ନଦୀ କୂଳବର୍ତ୍ତୀ ସ୍ଥାନମାନଙ୍କରେ ଏହା ଅଳ୍ପାଧିକ ଉତ୍ପନ୍ନ ହୁଏ । ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା କୂଳରେ ଏବଂ କଟକର କେନ୍ଦ୍ରାପଡ଼ାରେ ଏତେ ପଟୋଳ ଉତ୍ପନ୍ନ ହୁଏ ଯେ, ତଦ୍ୱାରା ଓଡ଼ିଶାର ନାନା ସ୍ଥାନରେ ବ୍ୟବସାୟ ହୁଏ । ମାତ୍ର ମାନ୍ଦ୍ରାଜ ପ୍ରଦେଶରେ ପଟୋଳ ଏକ ପ୍ରକାର ଅଚହ୍ନା ବୋଲିବାକୁ ହେବ । ମାନ୍ଦ୍ରାଜୀମାନେ ଯେ ପଟୋଳ ଭକ୍ଷଣ କରନ୍ତି ନାହିଁ ତାହା ନୁହେଁ, ପଟୋଳର ଚାଷ ପ୍ରଣାଳୀ ବିଷୟରେ ଉକ୍ତ ପ୍ରଦେଶର କୃଷକମାନେ ଅଜ୍ଞତା ହେତୁ ଉକ୍ତ ଚାଷ ପ୍ରାୟ କେହି କରନ୍ତି ନାହିଁ । ଉତ୍କଳର ସଂଲଗ୍ନ ଗଞ୍ଜାମରେ ସୁଦ୍ଧା ଏ ଚାଷ ଦେଖାଯାଏ ନାହିଁ । ଗଞ୍ଜାମର ଭୂମି ଯେପରି ସ୍ୱଭାବତଃ ଉର୍ବର, ସେଥିରେ ପଟୋଳ ଚାଷ ଯେ ଅନାୟାସରେ ହୋଇପାରିବ

ଏବଂ ତଦ୍ଦ୍ୱାରା କୃଷକମାନେ ସମଧିକ ଲାଭବାନ ହୋଇ ପାରିବେ ଏଥିରେ ଦ୍ୱିରୁକ୍ତି ନାହିଁ ।

ଗଞ୍ଜାମର କୌଣସି କୌଣସି ସ୍ଥାନରେ ଗଉଡ଼ କାକୁଡ଼ର ଚାଷ ଦେଖାଯାଏ । ଗଉଡ଼କାକୁଡ଼ି ପଟୋଳ ଜାତୀୟ ଫଳ । ମାତ୍ର ପଟୋଳ ପରି ଗୁଣକର କିମ୍ବା ସ୍ୱାଦୁ ବିଶିଷ୍ଟ ନୁହେଁ । ତଥାପି ବର୍ଷାଦିନରେ ଯଥେଷ୍ଟ ବିକ୍ରୟ ହୁଏ । ଗଞ୍ଜାମରେ ଗଉଡ଼କାକୁଡ଼ି ଗଛକୁ ମଞ୍ଚାରେ ମଡ଼ାନ୍ତି । ପଟୋଳକୁ ସେହିପରି ମଞ୍ଚାରେ ମଡ଼ାଇଲେ ଫଳ ଅପେକ୍ଷାକୃତ ବଡ଼ ହୁଏ, ମାତ୍ର ଫଳର ପରିମାଣ ଅଧିକ ହୁଏ ନାହିଁ । ଭୂମିରେ ମାଡ଼ିଲେ ପଟୋଳର ଫଳ ଅଧିକ ହୁଏ । ଗଞ୍ଜାମ-ବାସିଏ ଗଉଡ଼କାକୁଡ଼ି ଚାଷରେ ଯେପରି ଯତ୍ନ କରନ୍ତି, ସେହିପରି ଯତ୍ନ ସହକାରେ ପଟୋଳ ଚାଷ କଲେ ଅପେକ୍ଷାକୃତ ଅନେକ ଗୁଣରେ ଲାଭବାନ୍ ହୋଇପାରିବେ । ଗଞ୍ଜାମରେ ପଟୋଳର ସେର ଚାରିଅଣା ଠାରୁ ଛଅଅଣା ଦରରେ ବିକ୍ରୟ ହୋଇ ପାରେ । ଏହାର ଚାଷ ଅଧିକ କଠିନ କିମ୍ବା ବ୍ୟୟସାଧ୍ୟ ନୁହେଁ । ଇଚ୍ଛାକଲେ ଅନେକେ ଏହି ଚାଷ କରି ପ୍ରଭୂତ ଲାଭବାନ୍ ହୋଇ ପାରନ୍ତି । ପଟୋଳର ସକଳ ଅଂଶଠାରୁ ବୀଜ ଅଧିକ ପୁଷ୍ଟିକାରକ । ପ୍ରତ୍ୟହ ଏକପାଆ ହିସାବରେ ପଟୋଳ ବୀଜ ଭାଜି ଖାଇଲେ ଅଳ୍ପଦିନ ମଧ୍ୟରେ ଶରୀର ହୃଷ୍ଟପୁଷ୍ଟ ଏବଂ ବଳିଷ୍ଠ ହୁଏ ଅଧିକନ୍ତୁ ସେ ଅବସ୍ଥାରେ ତାହା ଗୁରୁପାକ ହୁଏ ।

ସାଧାରଣତଃ ନଦୀକୂଳସ୍ଥ ପଟୁମାଟି ପଟୋଳ ପକ୍ଷରେ ଉପଯୁକ୍ତ । ପଟୁ-ମାଟିରେ ଯେପରି ପ୍ରଚୁର ଫଳ ଧରେ ଏବଂ ହୃଷ୍ଟପୁଷ୍ଟ ହୁଏ ଅନ୍ୟତ୍ର ସେପରି ହୁଏ ନାହିଁ । ପଟୁଯୁକ୍ତ ଭୂମି ଅଭାବରେ ଅନ୍ୟ ଭୂମିରେ ଚାଷକଲେ ବିଶେଷ ଯତ୍ନ, ପରିଶ୍ରମ ଏବଂ ଯଥେଷ୍ଟ ସାର ପ୍ରଦାନର ଆବଶ୍ୟକ । ପଟୋଳ ଗୋଟିଏ ତରକାରି ଅଭାବ ମୋଚନକାରୀ ଲାଭଜନକ ଫସଲ । ଯହିଁରେ ସର୍ବତ୍ର ଯଥେଷ୍ଟ ପରିମାଣରେ ଏହି ଫସଲ ଉତ୍ପନ୍ନ କରାଯାଇପାରେ ତଦ୍‌ବିଷୟରେ ସମସ୍ତଙ୍କର ଯତ୍ନବାନ ହେବା ଉଚିତ ।

**ମୃତ୍ତିକା ନିର୍ବାଚନ**—ବର୍ଷାପ୍ଲାବିତ ଭୂମିରେ ପଟୋଳର ଚାଷ ହୁଏ ନାହିଁ । ସେଥି ନିମନ୍ତେ ଉଚ୍ଚ ଏବଂ ସାରବାନ ମୃତ୍ତିକା ଆବଶ୍ୟକ । ଦୋରସା କିମ୍ବା ହାଲୁକା ଦୋରସାମାଟି ପଟୋଳ ଚାଷର ଅନୁକୂଳ । ଉପଯୁକ୍ତ ପରିମାଣରେ ସାର ଦେଲେ ବାଲିଆ ମାଟିରେ ସୁଦ୍ଧା ପଟୋଳ ଉତ୍ପନ୍ନ ହୁଏ । କିନ୍ତୁ ଅଠାଳିଆ ଏକା-ବେଳକେ ପରିତ୍ୟାଜ୍ୟ । ଅଠାଳିଆ ମାଟିରେ ଯେତେ ଯତ୍ନ କଲେ ସୁଦ୍ଧା କୌଣସି ଫଳ ଦର୍ଶେ ନାହିଁ ।

**ସାର**—ପୂର୍ବେ କୋହାଯାଇଅଛି, ପଟୁମାଟିରେ ପଟୋଳ ଚାଷ କଲେ କୌଣସି ପ୍ରକାର ସାର-ଖତ ପ୍ରୟୋଗର ଆବଶ୍ୟକ ହୁଏ ନାହିଁ । ତଦ୍‌ଭିନ୍ନ ଅପର ମୃତ୍ତିକାରେ ଯଥେଷ୍ଟ ସାର ଦେଇ ଚାଷ କରିବାକୁ ହୁଏ । ପୁରାତନ ପୁଷ୍କରିଣୀର

ପଗ୍ଧ-ପଙ୍କମାଟି ପଟୋଳର ଅତ୍ୟୁତ୍କୃଷ୍ଟ ସାର । ପ୍ରତି ମାଣରେ ୨୫।୩୦ ଗାଡ଼ି ଶୁଖିଲା ପଙ୍କମାଟି ଚୂର୍ଣ୍ଣକରି ସାର ରୂପେ ପ୍ରୟୋଗ କରିବାକୁ ହୁଏ । ଅଭାବରେ ଗୋବର ଦ୍ୱାରା କାର୍ଯ୍ୟ ଚଳିପାରେ, ମାତ୍ର ସେଥିର ପରିମାଣ ଅଳ୍ପ ହେବାର ଆବଶ୍ୟକ । କାରଣ ପଟୋଳ ଜମିରେ ଅପର୍ଯ୍ୟାପ୍ତ ଗୋବର ସାର ପକାଇଲେ ଲତା ଗୁଡ଼ିକ ସ୍ଥୂଳ, ଦୀର୍ଘ ଏବଂ ଘନ ପତ୍ରବିଶିଷ୍ଟ ହୋଇ ମାଟି ଉପରେ ୫।୭ ପରସ୍ତ ଦଳମଳ ପଡ଼ିଯାଏ । ତାହା ଅଧିକ ହେଲେ ଫଳ ଆଦୌ ହୁଏ ନାହିଁ ଏବଂ ଯଦି ହୁଏ ତେବେ ଖୁବ୍ ଅଳ୍ପ ହୁଏ । ପୁନଶ୍ଚ ବେଶୀ ବର୍ଷା ହେଲେ ଲତାଗୁଡ଼ିକ ଏକାବେଳକେ ପଚିଯାଏ । ସେଥିରେ କ୍ଷେତ୍ରସ୍ୱାମୀ କ୍ଷତିଗ୍ରସ୍ତ ହୁଏ । ଗୋବର ସାର ଓ ପଙ୍କ ମାଟିର ପାର୍ଥକ୍ୟ ଏହି ଯେ, ଗୋବର ସାର ବ୍ୟବହାର କଲେ ଲତା-ଗୁଡ଼ିକ ଅଯଥା ବୃଦ୍ଧି ପ୍ରାପ୍ତ ହୁଏ, ମାତ୍ର ପଙ୍କସାର ଦ୍ୱାରା ଗଛର ଫଳନ-ଶକ୍ତି ଏବଂ ଫଳ ବୃଦ୍ଧି ହୁଏ । ପଙ୍କମାଟି ବ୍ୟବହାର କରି ଦେଖାଯାଇଅଛି, ସେଥିରେ ଗୋଟାଏ ଗୋଟାଏ ପଟୋଳ ୪ ଇଞ୍ଚଠାରୁ ୫ ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ଏବଂ ଭଦୁପ-ଯୋଗୀ ମୋଟା ହୁଏ ଏବଂ ଗଛର ଫଳୋତ୍ପାଦିକା ଶକ୍ତି ଅଧିକ ହେବା ଯୋଗୁଁ ପ୍ରଚୁର ପରିମାଣରେ ପଟୋଳ ଉତ୍ପନ୍ନ ହୁଏ । ପଟୋଳ କ୍ଷେତ୍ରରେ ଡାଲି ଶସ୍ୟର ଗୁଣ୍ଡପାସାର ଦେଲେ ମଧ୍ୟ ଉତ୍ତମ ଫଳ ଦିଏ । ବଙ୍ଗ ଦେଶର କୌଣସି କୌଣସି ସ୍ଥାନରେ ହରିତ୍ ସାର ପ୍ରୟୋଗ ଦ୍ୱାରା ପଟୋଳ ଆବାଦ କରାଯାଏ । ହରିତ୍‌ସାର ପ୍ରୟୋଗ କଲେ ଜମିରେ ଅନ୍ୟ ସାର ଦେବାର ଆବଶ୍ୟକ ହୁଏ ନାହିଁ । ଉଦ୍ଭିଦ ସାରକୁ ହରିତ୍‌ସାର ପ୍ରୟୋଗ ହୋଇଥାଏ । ଏହି ସାର ପ୍ରୟୋଗ ପ୍ରଣାଳୀ ଏହି ପୁସ୍ତକର ସ୍ଥାନାନ୍ତରରେ ବର୍ଣ୍ଣିତ ହେବ । କେହି କେହି ପଟୋଳ କ୍ଷେତ୍ରରେ ପାଉଁଶ ସାର ଦିଅନ୍ତି । ଏହା ପଟୋଳର ଉପଯୁକ୍ତ ସାର ନୁହେଁ । ବୋଧହୁଏ ସ୍ଥାନ ବିଶେଷରେ ଅଠାଳିଆ ମାଟିକୁ ଚୂର୍ଣ୍ଣ କରିବା ସକାଶେ ଏହି ବ୍ୟବସ୍ଥା କରାଯାଏ ।

**ଜମି ପ୍ରସ୍ତୁତ**—ଯେଉଁ ଜମିରେ ପଟୋଳ ଚାଷ କରିବାକୁ ହେବ ତାହାକୁ ଭାଦ୍ରମାସଠାରୁ ପ୍ରସ୍ତୁତ କରିବା ଉଚିତ୍ । ଥରେ ହଳ କଲା ପରେ ମଇଦ୍ୱାରା ଜମିର ମାଟି ଚାପିବାକୁ ହୁଏ । ନଚେତ୍ ଖରାରେ ଜମି ରସହୀନ ହୋଇଗଲେ ପୁନଶ୍ଚ ବର୍ଷାକୁ ଅପେକ୍ଷା କରି ବସି ରହିବାକୁ ହେବ । ଏପରି ଅବସ୍ଥାରେ କୃଷି କାର୍ଯ୍ୟରେ ବ୍ୟାଘାତ ଘଟେ ଏବଂ ବୀଜ ରୋପଣରେ ବିଳମ୍ବ ହୁଏ । ଏହିପରି ଥରକୁ ଥର ହଳ ଚଳନା ଦ୍ୱାରା ଜମିକୁ ଉତ୍ତମ ରୂପେ କୋମଳ କରିବା ଆବଶ୍ୟକ । ୪।୫ ଥର ହଳକରି ମାଟି ଭାଙ୍ଗି ସାର ମିଶାଇ ମଇ ଦେବ । ମଇଦ୍ୱାରା ଜମିକୁ ଏରୂପ ଭାବରେ ସମତଳ କରିବାକୁ ହେବ ଯେପରିକି ଜମି ମଧ୍ୟରେ ସ୍ଥାନେ ସ୍ଥାନେ ଜଳ ଜମି ରହି ଯାଇପାରେ । ପରେ ଏହି ସମତଳ କ୍ଷେତ୍ରରେ ଦୁଇହାତ ଅନ୍ତରରେ ସମାନ୍ତରାଳ ଭାବରେ ( ସଳଖ ଧାଡ଼ିରେ ) ଗୋଟିଏ ଗୋଟିଏ ଗାତ

ଖୋଳିବ । ଗାତର ଗଭୀରତା ଅର୍ଦ୍ଧହସ୍ତରୁ ଅଧିକ ରହିବ ନାହିଁ । ପରସ୍ପର ମଧ୍ୟ ଛ ଅଙ୍ଗୁଳି ହେବା ଉଚିତ୍ ।

**ବୀଜ ନିର୍ବାଚନ, ସଂଗ୍ରହ ଏବଂ ରୋପଣ**—ପଟୋଳର ମୂଳ ଏବଂ ଗଣ୍ଠିଯୁକ୍ତ ଡଙ୍କ ପୋତିଲେ ଗଛ ହୁଏ । ଗଣ୍ଠିରୁ ଯେପରି ଶୀଘ୍ର ଏବଂ ସହଜରେ ଗଛ ଉତ୍ପନ୍ନ ହୁଏ, ମୂଳରୁ ସେପରି ହୋଇପାରେ ନାହିଁ । କାର୍ତ୍ତିକମାସ ଆରମ୍ଭରେ ପଟୋଳର ପୁରାତନ ପରିପକ୍ୱ ଡଙ୍କ ସଂଗ୍ରହ କରିବା ଆବଶ୍ୟକ । ଯେଉଁ ଡଙ୍କରେ ଯଥେଷ୍ଟ ପରିମାଣରେ ପଟୋଳ ଫଳିଥିବ, ବୀଜ-ସକାଶ ସେହି ଡଙ୍କ ସଂଗ୍ରହ କରିବା ଉଚିତ୍ । ଡଙ୍କ ମଧ୍ୟରେ ଗଣ୍ଠି ରଖି ଚାରି ଚାରି ଅଙ୍ଗୁଳି ଲମ୍ବରେ କାଟିବ । ପୂର୍ବେ ବୋଲାଯାଇଅଛି, ବୀଜ ଡଙ୍କର ଗଣ୍ଠିରୁ ଗଛ ଜାତ ହୁଏ । ସେଥିସକାଶ ଡଙ୍କ-କାଟିବା ସମୟରେ ବୀଜ ଡଙ୍କରେ ଗଣ୍ଠି ରଖି କାଟିବା ବିଷୟରେ ବିଶେଷ ଦୃଷ୍ଟି ରଖିବାକୁ ହେବ । ପୂର୍ବୋକ୍ତ ଗାତରେ ଦୁଇ ଅଙ୍ଗୁଳି ବହଳରେ କୋମଳ ମାଟି ଦେଇ ପ୍ରତ୍ୟେକ ଗାତରେ ଦୁଇ, ତିନି ଖଣ୍ଡ ଲେଖାଏଁ ବୀଜଡଙ୍କ ଖଣ୍ଡ ଶାୟିତ ଭାବରେ ପକାଇ ମାଟି ଢାଙ୍କି ଦେବ । ବୀଜକୁ ଉଷ୍ମ ରଖିବା ସକାଶ ସେହି ଗାତ ଉପରେ କୁଟା ଢାଙ୍କି ଦେବାର ଆବଶ୍ୟକ । ଯେତେଦିନ ପର୍ଯ୍ୟନ୍ତ ବୀଜ ଅଙ୍କୁରିତ ନ ହେବ ତେତେ ଦିନ ପର୍ଯ୍ୟନ୍ତ ପ୍ରତ୍ୟହ ସନ୍ଧ୍ୟା ଏବଂ ସକାଳ ସମୟରେ ସେହି କୁଟା ଉପରେ ଅଳ୍ପ ଅଳ୍ପ ଜଳସେଚନ କରୁଥିବ । ଜଳସେଚନରେ ବିଶେଷ ବିବେଚନା ଆବଶ୍ୟକ । ଅତିରିକ୍ତ ଜଳସେଚନ କଲେ ପ୍ରୋଥିତ ବୀଜ ପଚିଯିବା ସମ୍ଭବ । ପୁଣି ଆଦୌ ଜଳ ନ ପାଇଲେ ବୀଜଦଣ୍ଡ ଶୁଖି ଯାଇପାରେ ୧୫ । ୨୦ଦିନ ପରେ ବୀଜରୁ ଗଛ ବାହାରେ । ଗଜା ବାହାରି ପାରିଲେ ଉପରେ ଢାଙ୍କିଥିବା କୁଟା ବାହାର କରିବାକୁ ହେବ । ଏହାପରେ ଗଛ ଡଙ୍କାଇବା ପର୍ଯ୍ୟନ୍ତ ପଟୋଳ କ୍ଷେତ୍ରରେ ଆଉ କୌଣସି କାର୍ଯ୍ୟ କରିବାକୁ ହୁଏ ନାହିଁ । କାର୍ତ୍ତିକରେ ବୀଜରୋପଣ କଲେ ମାର୍ଗଶିର ମାସରେ କ୍ଷେତ୍ରରେ କ୍ଷୁଦ୍ର କ୍ଷୁଦ୍ର ଲତା ଦେଖାଯାଏ । ଏହି ନବ ନିର୍ଗତ ଲତାଗୁଡ଼ିକ ଏଡ଼େ କୋମଳ ହୁଏ ଯେ, ଅତିରିକ୍ତ ବୃଷ୍ଟିପାତରେ ଶୀଘ୍ର ପଚିଯାଏ । ପୁଣି ଅତ୍ୟଧିକ ଉତ୍ତାପରେ ଶୁଷ୍କ ହୋଇଯାଏ । ସେଥି ସକାଶ ଯହିଁରେ କାର୍ତ୍ତିକ କିମ୍ବା ମାର୍ଗଶିରରେ ଲତା ବାହାରି ପାରେ ସେପରି ବିବେଚନାରେ ରୋପ କରିବା କର୍ତ୍ତବ୍ୟ । କାର୍ତ୍ତିକ ମାର୍ଗଶିରରେ ଅଧିକ ବୃଷ୍ଟି ବା ଅଧିକ ଉତ୍ତାପ ଥାଏ ନାହିଁ । ସୁତରାଂ ଲତା ନଷ୍ଟ ହେବାର କୌଣସି ଆଶଙ୍କା ଥାଏ ନାହିଁ । ଲତା-ଗୁଡ଼ିକ ବଢ଼ି ଅର୍ଦ୍ଧହସ୍ତ ହେଲେ ସମଗ୍ର କ୍ଷେତକୁ କୋଡ଼ି ଦେଇ ଘାସ ବାଛିବାକୁ ହୁଏ । ପରେ ଦୁଇପାଖରୁ ଗଛମୂଳକୁ ମାଟି ଟେକିଦେଇ ହୁଡ଼ା ବାନ୍ଧି ଦେବା ବିହିତ । ହୁଡ଼ାମାନ ୬ଇଞ୍ଚିରୁ ଅଧିକ ଉଚ୍ଚ କରିବା ଉଚିତ ନୁହେ । ଏପରି ଭାବରେ ହୁଡ଼ା ବାନ୍ଧିବ ଯେମନ୍ତ କି, ତାହା ଉପରେ ଗଛ ଧାଡ଼ି ଧାଡ଼ି ହୋଇ ମାଡ଼ି ପାରିବ ।

———

# ନାଶପଣ

—§✳§—

ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ

ଦ୍ୱାରା ସମ୍ପାଦିତ

ଏବଂ

ପୁରୀ ଧାମସ୍ଥ ରାଧାକାନ୍ତ ମଠର ମହନ୍ତ
ଶ୍ରୀଯୁକ୍ତ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ
ମହୋଦୟଙ୍କ ଆନୁକୂଲ୍ୟରେ
ପ୍ରକାଶିତ ।

—○✳○—

CUTTACK
Printed by the Cuttack printing
Company Limited.

1914

ମୂଲ୍ୟ-୧ ୦ / ଏକଅଣା ମାତ୍ର ।

# ନାଶପତ୍ର

ତମାଖୁ, ପିକା, ନାସ, ଭୁତପତ୍ର, ଗୁଡ଼ାଖୁ, ଗୁଣ୍ଡି, ଆଦି ନାନା ନାମରେ ନାନାଆକାର ଧାରଣକରି ଦେଶର ଆବାଳବୃଦ୍ଧବନିତାଙ୍କ ଦ୍ୱାରା ବ୍ୟବହୃତ ହେଉଅଛି । ତମାଖୁ ବିଷାକ୍ତ ଦ୍ରବ୍ୟ ହେତୁ ତାହାର ବ୍ୟବହାର ଦ୍ୱାରା ଅର୍ଥବ୍ୟୟ ସଙ୍ଗେ ସଙ୍ଗେ ଶରୀରର ଅନେକ ଅପକାର ସାଧିତ ହେଉଅଛି । ସର୍ବସାଧାରଣଙ୍କ ଉପକାର କାମନାରେ ତମାଖୁର ମନ୍ଦଗୁଣର ବିବରଣୀ ନିମ୍ନରେ ପ୍ରକାଶ କରି-ଯାଉଅଛି ।

ତମାଖୁ, ଦେଲଡୋନା ଓ ଧୂତୁରା ପ୍ରଭୃତି ବିଷଧର୍ମୀର ଉଦ୍ଭିଦ ଜାତିର ଅନ୍ତର୍ଗତ । ତମାଖୁ ପିଇଜଳ ଏବଂ ତମାଖୁ ନିଃସୃତ ତୈଳ ତୀବ୍ର ହଳାହଳ ଅଟେ, ଜଣେ ଇଉରୋପୀୟ ଚିକିତ୍ସକ ଗୋଟାଏ କୁକ୍କୁରର ଗଳଦେଶସ୍ଥ କୌଣସି ଏକ ଶିରାରେ ତିନିଗୋଟି ଛିଦ୍ରକରି ତହିଁରେ ପ୍ରଥମେ ସୁରାସାର ତତ୍ପରେ ଆଫିମର ପିଚକାରୀ ଦେଇଥିଲେ; ତହିଁରେ କୁକ୍କୁରର ଦୈହିକ କ୍ରିୟାର ବ୍ୟତିକ୍ରମ ଦେଖାଗଲା ନାହିଁ, କିନ୍ତୁ ଉକ୍ତ ଶିରାରେ ଏକବିନ୍ଦୁ ତମାଖୁ ତୈଳ ପ୍ରବେଶ କରାଇ ଦେବାରୁ କୁକୁରଟି ଦୁଇବିପଳ ସମୟ ମଧ୍ୟରେ ପ୍ରାଣତ୍ୟାଗ କଲା । ହୁକ୍କାର ନଳଟା ଭିତରେ ଯେଉଁ କାଣ୍ଡି ଦେଖାଯାଏ ତହିଁରେ ତମାଖୁର ତୈଳାଂଶ ଥାଏ, ତାହା ବିଷର କାର୍ଯ୍ୟ କରେ । କାଫ୍ରିମାନେ ତମାଖୁର କାଣ୍ଡି ପ୍ରୟୋଗ କରି ସର୍ପନାଶ କରିଥାନ୍ତି ।

ତମାଖୁର ଧୂମପାନକଲେ ଅଗ୍ନିମାନ୍ଦ୍ୟ ଜାତ ହୁଏ । କ୍ଷୁଧା ସମୟରେ ଧୂମପାନ କଲେ କ୍ଷୁଧା ସହିତ ଦୈହିକ ବଳ ମଧ୍ୟ କେତେକ କ୍ଷଣ ତିରୋହିତ ହୁଏ, ପିପାସା ବଢ଼େ, ଶରୀରର ପୋଷଣ କ୍ରିୟାରେ ବାଧା ଘଟେ, ଦେହ ଶୀର୍ଣ୍ଣ, ଦୁର୍ବଳ ଏବଂ ପାଣ୍ଡୁବର୍ଣ୍ଣ ହୁଏ, ବିବିଧ ସ୍ନାୟୁଶୂଳ ଜାତ କରେ, ପିତ୍ତ ପ୍ରାଧାନ ଧାତୁର ଲୋକମାନେ ଧୂମପାନ କଲେ ସମୟେ ସମୟେ ସେମାନଙ୍କର ଭେଦ ଓ ବମନ ହୁଏ । ଧୂମପାନ ହେତୁ ନିଶା ହେଲେ କ୍ରମରେ ଶିରୋଘୂର୍ଣ୍ଣନ, ଶାରୀରିକ ଅବସାଦନ, ପେଶି ସମୂହର ଶୈଥିଲ୍ୟ, ନାଡ଼ି ଦୌର୍ବଲ୍ୟ, ଘର୍ମ, ଶରୀରର ଶୀତ-ଳତା ପ୍ରଭୃତି ସାଂଘାତିକ ଲକ୍ଷଣମାନ ପ୍ରକାଶ ହୁଏ ।

ବାୟୁ ପ୍ରଧାନ ଧାତୁର ଲୋକମାନେ ଧୂମପାନକଲେ ଅଧିକତର କଣା, ମୂର୍ଚ୍ଛା ଏମନ୍ତ କି ମୃତ୍ୟୁ ପର୍ଯ୍ୟନ୍ତ ଘଟିଥାଏ; କାରଣ ଉକ୍ତ ଧାତୁର ଲୋକମାନଙ୍କ ଚଞ୍ଚଳ ସ୍ନାୟୁମଣ୍ଡଳର କ୍ରିୟା, ତମାଖୁର ଆକ୍ଷେପ ନିବାରକ ଗୁଣରେ ଏକାବେଳକେ ମନ୍ଦୀଭୂତ ହୋଇପଡ଼େ ।

ତମାଖୁ ସେବନ ଦ୍ୱାରା ସ୍ମୃତିଶକ୍ତି ହ୍ରାସ ହେବାର ଦେଖାଯାଏ । ତମାଖୁର ଅବସାଦକ ଓ ମାଦକତା ଗୁଣରେ ମସ୍ତିଷ୍କ ଓ ସ୍ନାୟୁମଣ୍ଡଳ କ୍ଷୀଣ ହୋଇପଡ଼େ, ତେତେବେଳେ ସେହି ମସ୍ତିଷ୍କ ଓ ସ୍ନାୟୁମଣ୍ଡଳର ସ୍ୱାଭାବିକ କ୍ରିୟାର ମଧ୍ୟ ବ୍ୟତିକ୍ରମ ଘଟେ, ପାକଯନ୍ତ୍ର ସହିତ ମସ୍ତିଷ୍କର ଅତି ନିକଟ ସମ୍ବନ୍ଧ । ତମାଖୁ ଚର୍ବଣ ବା ତାହାର ଧୂମପାନ ଅଥବା ନସ୍ୟଗ୍ରହଣ ହେତୁ ପାକଯନ୍ତ୍ର ଦୂଷିତ ହେଲେ ମସ୍ତିଷ୍କରେ ତାହାର କ୍ରିୟା ପ୍ରତିଫଳିତ ହୁଏ । ଏହି କାରଣରୁ ତମାଖୁ ଭକ୍ତମାନଙ୍କର ସ୍ମୃତି ଶକ୍ତିହ୍ରାସ ହୁଏ । ସେହିପରି ଲୋକମାନେ ମୁହୁର୍ମୁହୁ ତମାଖୁ ସେବନ ନ କଲେ ଧାରାବାହିକ ରୂପେ ସର୍ଜ୍ଜିତକରି କୌଣସି କଥା କହିପାରନ୍ତି ନାହିଁ ।

ତମାଖୁ ସେବନ ହେତୁ ଆସ୍ୱାଦନର ବ୍ୟତିକ୍ରମ ଘଟେ । ତମାଖୁ ସେବନ ନ କରୁଥିବା ଲୋକ ଯେଉଁ ଖାଦ୍ୟକୁ ସୁସ୍ୱାଦୁ ବୋଧ କରେ, ତମାଖୁ ଭକ୍ତ ତାହାକୁ ବିସ୍ୱାଦୁଖାଦ୍ୟ ମନେକରେ, ବାରମ୍ବାର ତମାଖୁ ସେବନ ହେତୁ ସେମାନଙ୍କ ମୁଖଗହ୍ୱରର ଶ୍ଳେଷ୍ମାତ୍ମକ ଝିଲ୍ଲି ଓ ରସନାର ସ୍ନାୟୁସମୂହ ଅବସାଦଯୁକ୍ତ ହୋଇଥିବାରୁ ଅଧିକ ରାଗ, ମିଷ୍ଟ, ଅମ୍ଳ ବା ଅଧିକ ମଶଲାଯୁକ୍ତ ନ ହେଲେ କୌଣସି ପଦାର୍ଥ ସେମାନଙ୍କ ରସନାରେ ସୁସ୍ୱାଦୁ ବୋଧ ହୁଏ ନାହିଁ, ଏହା କି ଅଳ୍ପ ଅନୁତାପର ବିଷୟ !

ଚିକିତ୍ସକମାନଙ୍କ ମଧ୍ୟରୁ ଅନେକେ ଅନୁମାନ କରନ୍ତି ଯେ ଶୋକ ଓ ମନସ୍ତାପ, ହୃତ୍‌ସ୍ପନ୍ଦନର କାରଣ ହେଲେ ସୁଦ୍ଧା ତମାଖୁ ସେବନ ହେତୁ ପାକଯନ୍ତ୍ର ଦୂଷିତ ହୋଇ ଏହି ରୋଗ ଜାତ ହୁଏ, ଅନ୍ୟଥା ହୁଏ ନାହିଁ । ତମାଖୁର ମାଦକତା ଗୁଣ ହେତୁ ହୃତ୍‌ପିଣ୍ଡର ପେଶୀସମୂହ ଶିଥିଳ ହୋଇ ରକ୍ତ ସଞ୍ଚାଳନ କାଳରେ ବିଶେଷ ସ୍ପନ୍ଦିତ ହୋଇଥାଏ । ଧୂମପାନ ହେତୁ ଆହୁରି ମଧ୍ୟ ଅନେକ ରୋଗ ଜାତ ହୁଏ । ଜଣେ ବିଚକ୍ଷଣ ଚିକିତ୍ସକ କହିଅଛନ୍ତି, ଦୀର୍ଘକାଳ ଧୂମପାନ କରି କାହିଁ ରୋଗରେ ପୀଡ଼ିତ ହୋଇ ନ ଥିବା ଲୋକ କୁତ୍ରାପି ଦେଖାଯାଇ ନାହିଁ, ତମାଖୁର ଅବସାଦକ ଗୁଣରେ ବାୟୁ କୋଷସ୍ଥିତ ସ୍ନାୟୁସମୂହ ଯେତେବେଳେ ଅତିଶୟ ଦୁର୍ବଳ ଏବଂ ଶ୍ଳେଷ୍ମାତ୍ମକ ଝିଲ୍ଲି ଶିଥିଳ ହୋଇ ପଡ଼େ, ତେତେବେଳେ ଉଚ୍ଛ୍ୱାସ ଉପସ୍ଥିତ ହୋଇ ଉକ୍ତ ଯନ୍ତ୍ର, ବାୟୁପୂର୍ଣ୍ଣ ହୋଇ ଯଥାଯଥ ପରିମାଣରେ

ବିବୃତ ହୋଇପାରେ ନାହିଁ; ସୁତରାଂ ତାହାର ସୂକ୍ଷ୍ମ କୌଶିକାର କୌଣସି କୌଣସି ସ୍ଥାନ ଛିନ୍ନ ହୋଇଯାଏ । ସେହି ଛିନ୍ନଭିନ୍ନ କ୍ରମରେ କ୍ଷତରୂପରେ ପରିଣତ ହୋଇ ଦୁର୍ଦ୍ଧିକିତ୍ସ୍ୟ, ଶୀଘ୍ର ସଂହାରକାରକ କ୍ଷୟକାଶ ନାମକ ଭୟଙ୍କର ରୋଗକୁ ଜାତ କରେ । ବିଭିନ୍ନ ବ୍ୟକ୍ତିର ହୁକ୍କା ବା ପିକାରେ ତମାଖୁ ସେବନ କଲେ ଅନେକ ପ୍ରକାର ସଂକ୍ରାମକ ରୋଗରେ ଆକ୍ରାନ୍ତ ହେବାକୁ ପଡ଼େ ।

ଯେଉଁମାନେ ଅଭ୍ୟାସ କରି ଧାରାବାହିକ ରୂପେ ଅନେକ ବର୍ଷ ଯାଏ ଧୂମପାନ କରନ୍ତି, ସେମାନଙ୍କର ଫୁସ୍ ଫୁସ୍‌ରୁ ସାଇଁ ସାଇଁ ଶବ୍ଦ ନିର୍ଗତ ହୁଏ । ସେପରି ଲୋକମାନେ ଅଧିକକ୍ଷଣ ଦମ୍ ରଖି ପାରନ୍ତି ନାହିଁ, ଘନ ଘନ ନିଶ୍ୱାସ ତ୍ୟାଗ କରନ୍ତି । ଘନଶ୍ୱାସୀ ଲୋକ ଅଳ୍ପାୟୁ ହେବା ସ୍ୱତଃସିଦ୍ଧ କଥା । ଧୂମପାନ ହେତୁ ଶ୍ୱାସ କୃଚ୍ଛ୍ରରୋଗରେ ପୀଡ଼ିତ ହୋଇଥିବା ଲୋକମାନେ ବେଗରେ ଚାଲି ପାରନ୍ତି ନାହିଁ । ଏକସମୟରେ ୬୦।୭୦ଟି କଥା କହିବାକୁ ହେଲେ ୧୦।୧୫ ଥର ଖୁଁ ଖୁଁ କରି କାସିଥାନ୍ତି । ଧୂମପାନର ଅଭ୍ୟାସ କରିବାରେ ଆଉ ଗୋଟିଏ ପ୍ରଧାନ ଦୋଷଅଛି । ଯେଉଁମାନଙ୍କର ଧୂମପାନର ଅଭ୍ୟାସ ନାହିଁ, ସେପରି ବ୍ୟକ୍ତିମାନେ ଏକାଦିକ୍ରମେ ଅବିଶ୍ରାନ୍ତ ୫।୬ ଘଣ୍ଟାକାଳ ପରିଶ୍ରମ କରିପାରିବେ ।— ସହସା କ୍ଳାନ୍ତ ହୋଇ ପଡ଼ିବେ ନାହିଁ; କିନ୍ତୁ ଧୂମପାୟିମାନେ ତମାଖୁ ସେବନ ନ କରି ଧାରାବାହିକ ରୂପେ ଅଧିକ କ୍ଷଣ ପରିଶ୍ରମ କରି ପାରିବେ ନାହିଁ, ମଦ୍ୟାଦି ମାଦକ ଦ୍ରବ୍ୟ ଶରୀରର ତାପ ଉତ୍ପାଦକ, କିନ୍ତୁ ତମାଖୁ ଅବସାଦକ । ତଦ୍ଦ୍ୱାରା ତାପର ହ୍ରାସ ଛଡ଼ା ବୃଦ୍ଧି ହୁଏ ନାହିଁ । ଅଧିକ ଶ୍ରମ କଲାପରେ ଧୂମପାନ କଲେ ଯେ କିଞ୍ଚିତ୍ ବିଶ୍ରାମ ବୋଧହୁଏ, ଅବସାଦକ ଗୁଣ ତାହାର ପ୍ରଧାନ କାରଣ । ତମାଖୁ ସାହାଯ୍ୟରେ ଅସ୍ୱାଭାବିକ ରୂପେ ବିଶ୍ରାମ ଲାଭ କରିବା ସୁବିବେଚନାର କାର୍ଯ୍ୟ ନୁହେଁ ।

'ଭାବପ୍ରକାଶ' ନାମକ ବିଖ୍ୟାତ ବୈଦ୍ୟଙ୍କ ଗ୍ରନ୍ଥରେ ଧୂମପାନ ସମ୍ବନ୍ଧେ ଲିଖିତ ଅଛି ଯେ—

"ସଦ୍ୟଃ ଶ୍ଳେଷ୍ମାକରୋ ଧୂମୋ ନେତ୍ରୟୋ ରହିତୋ ଭୃଶଂ<br>
ଶିରେ ଗୌରବ କୃଚ୍ଚାପି ବାତପିତ୍ତସ୍ୟ କୋପସ୍ୟେତ୍"

"ଧୂମପାନ କଲେ ସଦ୍ୟ ଶ୍ଳେଷ୍ମା ଜାତ ହୁଏ, ନେତ୍ରର ଅତ୍ୟନ୍ତ ଅପକାର ସାଧିତ ହୁଏ, ମସ୍ତକ ଭାରି ବୋଧହୁଏ ଏବଂ ବାତ ପିତ୍ତର ପ୍ରକୋପ ହୁଏ ।"

ତମାଖୁର ବିରେଚନ ଶକ୍ତି ଥିବାରୁ ଅନେକ ଲୋକ ଶୌଚ ସକାଶେ ଯିବା ପୂର୍ବରୁ ତମାଖୁ ଚର୍ବଣ ବା ତାହାର ଧୂମପାନ କରିଥାନ୍ତି, ଏପରି କରିବାଦ୍ୱାରା ପ୍ରଥମତଃ କିଛିଦିନ ଉପକାର ହୁଏ, କିନ୍ତୁ ଏପରି କରିବାର ଅଭ୍ୟାସ ହୋଇ-

ଗଳାରୁ ପଛକୁ କିଛିମାତ୍ର ଉପକାର ଦର୍ଶେ ନାହିଁ, ବରଂ "କୋଷ୍ଠାଶ୍ରିତ ବାୟୁ" ନାମକ ଆଉ ଗୋଟିଏ ରୋଗ ଜାତ ହୋଇଥାଏ । ତମାଖୁ ଚର୍ବଣ କଲେ ଅଧିକ ପରିମାଣରେ ଲାଳାକ୍ଷରିତ ହୁଏ । ଲାଳା ଅନ୍ନାଦି ପରିପାକର ପ୍ରଧାନ ଉପକରଣ, ତାହା ବୃଥାରେ ବ୍ୟୟିତ ହେଲେ ପରିପାକ କ୍ରିୟାରେ ବାଧା ଜନ୍ମିଥାଏ ।

ଦନ୍ତମଳ ଦୃଢ଼ ହେବା ଆଶାରେ ଅନେକ ଲୋକ ତମାଖୁଚୂର୍ଣ୍ଣ ବା ପୋଡ଼ା ଗଡାଖିର ଚୂର୍ଣ୍ଣ ଦ୍ୱାରା ଦନ୍ତ ମାର୍ଜ୍ଜନା କରନ୍ତି; କେହି କେହି ବା ତମାଖୁ ଚର୍ବଣ କରନ୍ତି, କିନ୍ତୁ ଚିକିତ୍ସକମାନେ ପରୀକ୍ଷା କରି ଦେଖି ଅଛନ୍ତି ଯେ ତମାଖୁ ଦ୍ୱାରା ଦନ୍ତର ଉପକାର ପରିବର୍ତ୍ତେ ଅପକାର ହୋଇଥାଏ । ମାଢ଼ି ବା ଦନ୍ତମୂଳ ଦୃଢ଼-ଥିଲେ ଦନ୍ତ ଦୃଢ଼ ଥାଏ । ତମାଖୁ ସେବନ ହେତୁ ଯେତେବେଳେ ମାଂସପେଶୀ ଶିଥିଳ ହୋଇଯାଏ, ତେତେବେଳେ ଦନ୍ତମାନେ ମଧ୍ୟ ଶ୍ଳଥମୂଳ ହୋଇଯାଆନ୍ତି । ପାରଦ-ସେବନ, ଊର୍ଦ୍ଧ୍ୱଶ୍ଲେଷ୍ମା ବା ପୁରାତନ ଉଦରାମୟ ପ୍ରଭୃତି କାରଣରୁ ମାଢ଼ି ଶିଥିଳ ହେଲେ ତମାଖୁ ଦ୍ୱାରା ତହିଁର ପ୍ରତିକାର ଚେଷ୍ଟା ନ କରି ନିମ୍ବ, ବକୁଳ ଓ ଖଦିରାଦି କାଷ୍ଠରେ ଦନ୍ତ ଧାବନ କଲେ ଏବଂ କଷାୟ ଜଳରେ ମୁଖଧୌତ କଲେ ପ୍ରକୃତ ଉପକାରର ସମ୍ଭାବନା । ତମାଖୁର ଅବସାଦକ ଗୁଣରେ ଦନ୍ତମୂଳର ସ୍ନାୟୁସମୂହ ନିସ୍ତେଜ ହୋଇ ଯିବାରୁ କେତେକ କ୍ଷଣ କ୍ଷତଜନିତ ଯନ୍ତ୍ରଣା ସ୍ଥଗିତ ଥାଏ ସତ୍ୟ, କିନ୍ତୁ ଏପରି କଷ୍ଟମୟ ସାମଗ୍ରୀର ପରିବର୍ତ୍ତିରେ ଅନ୍ୟ ଔଷଧ ବ୍ୟବହାର କରିବା ସର୍ବତୋଭାବରେ କର୍ତ୍ତବ୍ୟ ।

ଶୁକ୍ରକ୍ଷୟ, ଦୁଶ୍ଚିନ୍ତା ଓ ଅପରିମିତ ତମାଖୁ ସେବନ, ଏ ପ୍ରତ୍ୟେକେ "ସ୍ନାୟୁଦୌର୍ବଲ୍ୟ" ନାମକ ରୋଗର ଉତ୍ପାଦକ । ବିଖ୍ୟାତନାମା ଚିକିତ୍ସକମାନଙ୍କ ମତରେ ଧୂମ୍ରପାନଜନିତ ସ୍ନାୟୁଦୌର୍ବଲ୍ୟରୋଗ ନାନାବିଧ ଔଷଧ ପ୍ରୟୋଗରେ ମଧ୍ୟ ଉପଶମିତ ହୁଏ ନାହିଁ ।

ନିୟତ ନସ୍ୟ ବ୍ୟବହାର କଲେ ନାସିକାର ଶ୍ଳେଷ୍ମାତ୍ମକ ଝିଲ୍ଲିରେ ପ୍ରଦାହ ଜନ୍ମେ, ସୁତରାଂ ଅବିରତ ତାହାର ଗାତ୍ରରୁ ଶୋଣିତର ଜଳୀୟାଂଶ ଶ୍ଳେଷ୍ମା-ରୂପରେ ନିଃସୃତ ହୋଇଥାଏ । ନସ୍ୟ ସେବନ କଲେ ଆଘ୍ରାଣସ୍ନାୟୁର କ୍ରିୟା ମନ୍ଦ ହୋଇଯାଏ । ଏହି କାରଣରୁ ଅଳ୍ପ ଦୁର୍ଗନ୍ଧ ବା ଅଳ୍ପ ସୁଗନ୍ଧ, ନସ୍ୟସେବମାନଙ୍କ ନାସିକାଗ୍ରାହ୍ୟ ହୁଏ ନାହିଁ । ନସ୍ୟ ବହୁକାଳ ବ୍ୟବହାର କଲେ ତାଳୁର ପ୍ରାନ୍ତସ୍ଥ ମାଂସପେଶୀ ସବୁ ଶିଥିଳ ହୁଏ, ଏହେତୁ ସେମାନଙ୍କର ଅନୁନାସିକ ବର୍ଣ୍ଣର ଉଚ୍ଚାରଣ କ୍ଷମତା ଲୋପପାଏ । ଅତିରିକ୍ତ ନସ୍ୟ ବ୍ୟବହାର କଲେ ତହିଁର କେତେକ ଅଂଶ ଗଳନଳୀବାଟେ ଆମାଶୟକୁ ଯାଏ ଏବଂ ମନ୍ଦାଗ୍ନି ଓ ରକ୍ତାମା-ଶୟ ରୋଗକୁ ଜନ୍ମାଏ । ଭୁବନ ବିଖ୍ୟାତ ନେପୋଲିୟନ ବୋନାପାର୍ଟ୍ଟ ଅପରିମିତ

ନସ୍ୟ ବ୍ୟବହାର କରୁଥିବା ହେତୁ ରକ୍ତାମାଶୟ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ତ୍ୟାଗ କରିଥିଲେ । ଯେଉଁ ନେପୋଲିୟନ ବୋନାପାର୍ଟ ପ୍ରାୟ ସମଗ୍ର ଇଉରୋପ ଜୟ କରିଥିଲେ, ସେ ସାମାନ୍ୟ ନସ୍ୟ ନିକଟରେ ପରାଭୂତ ହୋଇ ପ୍ରାଣ ହରାଇ ଥିଲେ !!

ଡାକ୍ତର ଏକ୍ସଇକ୍. ସି. ଗ୍ଲିସନ ବାରବର୍ଷକାଳ ତମାଖୁ ସେବନ କରି ଏବଂ ବହୁକାଳ ତତ୍ସମ୍ବନ୍ଧରେ ନାନାବିଧ ପରୀକ୍ଷା କରି ନିମ୍ନଲିଖିତ ମତ ପ୍ରକାଶ କରିଅଛନ୍ତି । ଯଥା—

"୧—ଅଧିକକାଳ ତମାଖୁ ବ୍ୟବହାର କଲେ କ୍ଷୁଧା ହ୍ରାସ ହୁଏ ଏବଂ ଯେଉଁମାନେ ଅଧିକ ତମାଖୁ ବ୍ୟବହାର କରନ୍ତି ସେମାନେ ବେଶି ଭୋଜନ କରି ପାରନ୍ତି ନାହିଁ ।

୨—ତମାଖୁ ସେବନ ହେତୁ ପରିପାକଶକ୍ତି ହ୍ରାସ ହୁଏ ଏବଂ ଏହି ହେତୁରୁ ଅନ୍ନ ଓ ପାକଯନ୍ତ୍ର ସମ୍ବନ୍ଧୀୟ ଅନ୍ୟାନ୍ୟ ନାନାପ୍ରକାର ରୋଗର ଉତ୍ପତ୍ତି ହୋଇଥାଏ ।

୩—ଅଧିକକାଳ ତମାଖୁ ସେବନ କଲେ ମୁଖ ଓ ଗଳା ଫୁଲିଉଠେ, ଏ ହେତୁ ସ୍ୱରର ସ୍ୱାଭାବିକ ମାଧୁର୍ଯ୍ୟ ନଷ୍ଟ ହୁଏ । ଯେଉଁମାନେ ବେଶି ତମାଖୁ ସେବନ କରନ୍ତି ସେମାନେ ପ୍ରାୟ ଭଲ ଗାୟକ ହୋଇ ପାରନ୍ତି ନାହିଁ ।

୪—ତମାଖୁ ଖାଇଲେ ହୃଦୟର କାର୍ଯ୍ୟ ସୁବିଧାରୂପେ ଚଳେ ନାହିଁ ଏବଂ ହୃଦ୍‌ରୋଗ ହେବାର ସମ୍ଭାବନା ।

୫—ତମାଖୁ ବ୍ୟବହାର ହେତୁ ସ୍ନାୟବିକ ରୋଗସମୂହ ଜାତ ହୁଏ, ମନ ନିସ୍ତେଜ ହୋଇ ପଡ଼େ ଏବଂ ସ୍ମରଣଶକ୍ତି ଦୁର୍ବଳ ହୋଇଯାଏ ।

୬—ତମାଖୁ ସେବନ କଲେ ଦର୍ଶନ ଓ ଶ୍ରବଣ ଶକ୍ତିର ହ୍ରାସ ହୁଏ । କଞ୍ଚା ତମାଖୁ ଚର୍ବଣ କଲେ ଦର୍ଶନ ଓ ଶ୍ରବଣ ଶକ୍ତିର ଅଧିକ ଅନିଷ୍ଟ ହୁଏ ।

୭—ତମାଖୁ ବ୍ୟବହାର କଲେ ଅଙ୍ଗପ୍ରତ୍ୟଙ୍ଗ ଯଥାଯୋଗ୍ୟ ରୂପେ ବର୍ଦ୍ଧିତ ହୁଏ ନାହିଁ ଏବଂ ଶରୀରରେ ବଳସଞ୍ଚାର ହୁଅଇ ନାହିଁ । ଯେଉଁମାନେ ବଳବାନ୍ ହେବାକୁ ଇଚ୍ଛା କରନ୍ତି ସେମାନଙ୍କର ତମାଖୁ ବ୍ୟବହାର ପରିତ୍ୟାଗ କରିବା ଉଚିତ ।

୮—ଅଳ୍ପବୟସ୍କ ବ୍ୟକ୍ତିମାନଙ୍କ ପକ୍ଷେ ତମାଖୁ ବିଷତୁଲ୍ୟ, ଯୁବକମାନଙ୍କର ମସ୍ତିଷ୍କକୁ ବିକୃତ ଏବଂ ଉତ୍ତେଜିତ କରିବା ବିଷୟରେ ତମାଖୁ ବଡ଼ ତତ୍ପର ।

୬—ତାମ୍ରକୂଟ ସେବନ କରିବା, ସମସ୍ତ ଏବଂ ଅର୍ଥ ସାପେକ୍ଷ । ତମାଖୁ-ସେବୀ ଅନ୍ୟର ଅସୁଖର କାରଣ ହୋଇ ଉଠେ । ତାମ୍ରକୂଟ ପାନ୍ଥିର ମୁଖନିଃସୃତ ଧୂମରେ ତମାଖୁ ସେବନ କରୁ ନ ଥିବା ବ୍ୟକ୍ତିମାନେ ବ୍ୟତିବ୍ୟସ୍ତ ହୋଇ ପଡ଼ନ୍ତି ।"

ଡାକ୍ତର କଙ୍କୋଏଷ୍ଟ ଆପଣା ଜୀବନର ଅଧିକାଂଶ ସମୟ ଚିକିତ୍ସା ବ୍ୟବସାୟରେ ଅତିବାହିତ କରିଅଛନ୍ତି । ସେ କହନ୍ତି "ଦୁଃସାଧ ଅଜୀର୍ଣ୍ଣ ରୋଗ ଏବଂ ଉଦର ଓ ଯକୃତ ସମ୍ବନ୍ଧୀୟ ଯାବତୀୟ ଅସାଧ ରୋଗ ପ୍ରାୟ ତମାଖୁ ବ୍ୟବହାର ହେତୁ ଜାତ ହୋଇଥାଏ ।"

ଆର. ବି ଗ୍ରିନ ଭର୍ଡ଼ କହନ୍ତି "ଅଫିମ, ମଦ ଓ ତମାଖୁର ଉପକ୍ଷାର ମନୁଷ୍ୟ ଶରୀରରେ ପ୍ରବେଶ କଲେ ତଦ୍ଦ୍ୱାରା ସ୍ନାୟୁମଣ୍ଡଳର ସମୂହ ଅନିଷ୍ଟ ସାଧିତ ହୁଏ ।"

ଗିବ୍‌ଲିନ ଓ ଗ୍ରିନଡ୍ରିଡ ନାମକ ଡାକ୍ତର ଦ୍ୱୟ ଏକମତ ହୋଇ କହୁଅଛନ୍ତି ଯେ "ଅଜୀର୍ଣ୍ଣ ରୋଗର ଅନ୍ୟାନ୍ୟ କାରଣ ଥିଲେ ମଧ୍ୟ ଅତିରିକ୍ତ ଧୂମପାନ ଏବଂ ନସ୍ୟ ଗ୍ରହଣ ଯେ ତହିଁର ପ୍ରଧାନ କାରଣ, ଏଥିରେ ଲବମାତ୍ର ସନ୍ଦେହ ନାହିଁ ।"

ଡାକ୍ତର ଦୁର୍ଗାଦାସ କର ତାଙ୍କ ପ୍ରଣୀତ "ଭୈଷଜ୍ୟରତ୍ନାବଳୀ" ଗ୍ରନ୍ଥରେ ଲେଖିଅଛନ୍ତି "ତମାଖୁ ବିଷର ୨।୪ ଟୋପାରେ ବୃହତ୍‌ହସ୍ତୀ ପର୍ଯ୍ୟନ୍ତ ମୃତ୍ୟୁ ମୁଖରେ ପତିତ ହୁଅନ୍ତି ।"

ତମାଖୁର ଧୂମମିଶ୍ରିତ ବାୟୁ ସେବନରେ ସାଧାରଣଙ୍କର ଅନିଷ୍ଟ ହୁଏ, ଏଥିପାଇଁ ଯୁକ୍ତରାଜ୍ୟର ପ୍ରସିଦ୍ଧ ନଗର ବୋଷ୍ଟନର ରାଜପଥରେ ତମାଖୁ ସେବନ କରିବାର ନିଷେଧ ବିଧି ପ୍ରବର୍ତ୍ତିତ ହୋଇଅଛି ।

ତମାଖୁ ସେବନକାରୀମାନଙ୍କ ମୁଖରୁ ଉତ୍କଟ ଗନ୍ଧ ବାହାରେ । ତମାଖୁର ଧୂମ ଚକ୍ଷୁରେ ଲଗିଲେ ଏକପ୍ରକାର ଚକ୍ଷୁରୋଗ ଜାତ ହୋଇ ଦର୍ଶନଶକ୍ତି ହ୍ରାସ କରେ ।

ତମାଖୁର ଅପକାରିତା ହୃଦୟଙ୍ଗମ କରି ପାରିଥିବା ହେତୁ ଭୁବନ ବିଖ୍ୟାତ ମାନନୀୟ ଗ୍ଲାଡ଼ଷ୍ଟୋନସାହେବ ନିଜ ଜୀବନରେ ତମାଖୁ ଆଦୌ ବ୍ୟବହାର କରି ନାହାନ୍ତି ।

ଅନେକଙ୍କ ମତରେ ଅନ୍ୟାନ୍ୟ ମାଦକଦ୍ରବ୍ୟ ତୁଳନାରେ ତମାଖୁ କିଛି ନୁହେଁ ଅର୍ଥାତ୍ ତମାଖୁକୁ ମାଦକଦ୍ରବ୍ୟ ବୋଲିଯାଇ ନ ପାରେ ବା ତମାଖୁ ନାମ ମାତ୍ର ମାଦକଦ୍ରବ୍ୟ । କିନ୍ତୁ ଦ୍ରବ୍ୟଗୁଣବିତ୍ ଶରୀରତତ୍ତ୍ୱଜ୍ଞ ପଣ୍ଡିତବର୍ଗଙ୍କ

ବିବେଚନାରେ ତମାଖୁ ବଡ଼ କ୍ଷତିକର ମାଦକଦ୍ରବ୍ୟ । 'ତମାଖୁକୁ ଅଫିମର ପ୍ରାଣାଧିକ ମିତ୍ର, ଗଞ୍ଜେଇର କନିଷ୍ଠଭ୍ରାତା ଓ ସୁରା ରାକ୍ଷସୀର ପିତା ବୋଲି ରୂପକ କଲେ ମଧ୍ୟ ଅସଙ୍ଗତ ହେବ ନାହିଁ । ଡାକ୍ତର ରିଚାର୍ଡସନମ୍ୟାକନିସ ବହୁ ପ୍ରମାଣ ଦର୍ଶନ କରି ସ୍ୱପ୍ରଣୀତ ଗ୍ରନ୍ଥ ମଧ୍ୟରେ ଲେଖିଅଛନ୍ତି "ତମାଖୁ, ସୁରାସମ ଶ୍ରେଣୀର ମାଦକ ଏବଂ ତାହାର ସେବକମାନେ ଏକପ୍ରକାର ନିଶାଖୋର ମଧ୍ୟରେ ପରିଗଣିତ ।"

ଉପରୋକ୍ତ ପ୍ରମାଣ ବଚନମାନଙ୍କ ଦ୍ୱାରା ସୁସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ, ତମାଖୁ ଯେ କୌଣସି ପ୍ରକାରେ ବ୍ୟବହାର କଲେ ସ୍ନାୟୁ ଦୌର୍ବଲ୍ୟ, ଘ୍ରାଣ ଓ ସ୍ମୃତି ଶକ୍ତିର ହ୍ରାସ, ଅସ୍ୱାଦନର ବ୍ୟତିକ୍ରମ, ହୃତ୍‌ସ୍ପନ୍ଦନ, କାସ, ଯକ୍ଷ୍ମା, ଶ୍ୱାସ, କୁଷ୍ଠ, ଦୈହିକ ତାପହାନି, ମୁଖ ଦୁର୍ଗନ୍ଧଯୁକ୍ତ, ଦନ୍ତ ଶ୍ଳଥମୂଳ ହୁଏ, ତହିଁ ସକାଶ ଅନେକ ସମୟ ଏବଂ ଅର୍ଥ ମଧ୍ୟ ନଷ୍ଟ ହୁଏ, ଶରୀର ବୃଦ୍ଧିରେ ବାଧା ଘଟେ ଏବଂ ବିଧି ଅନେକ ଅନିଷ୍ଟ ଘଟୁଥିବା ସ୍ଥଳେ, ତମାଖୁ ସେବନରେ ପ୍ରବୃତ୍ତହେବା ସୁବିବେଚନାର କାର୍ଯ୍ୟ ନୁହେଁ, ଅତଏବ ନିଜେ ନିଜେ ଉକ୍ତ ମନ୍ଦ ଅଭ୍ୟାସ ପରିତ୍ୟାଗ କରି ଗ୍ରାମର ଗୃହର ଅପର ଲୋକମାନେ ତମାଖୁ ବ୍ୟବହାର କରି ନ ପାରିବା ଏବଂ ବ୍ୟବହାର କରୁଥିବା ଲୋକମାନେ ତହିଁରୁ ବିରତ ହେବା ବିଷୟରେ ସମୁଚିତ ଚେଷ୍ଟା ଓ ସତର୍କତା ଅବଲମ୍ବନ କରିବା ସମସ୍ତଙ୍କର କର୍ତ୍ତବ୍ୟ ।

ଧୂଆଁପତ୍ର ଦ୍ୱାରା ନସ୍ୟ ପ୍ରସ୍ତୁତ ହୁଏ ବୋଲି ତାହାର ଅପର ନାମ ନାସପତ୍ର, ମାତ୍ର ଧୂଆଁପତ୍ର ଶରୀର ନାଶରେ ସକ୍ଷମ ଥିବା ହେତୁ ଦନ୍ତ୍ୟ 'ସ' ଠାରେ ତାଲବ୍ୟ 'ଶ' ହେବା ଅର୍ଥାତ୍ ଧୂଆଁପତ୍ରର ଅନ୍ୟ ନାମ ନାଶପତ୍ର ହେବା ଉଚିତ୍ ।



# ସ୍ୱର୍ଗ—ନରକବିଚାର

( ଏକ ସମ୍ପୂର୍ଣ୍ଣ ପୁସ୍ତକ )

**ପଣ୍ଡିତ ନୀଳମଣି ବିଦ୍ୟାରତ୍ନ**

ଅସ୍ମମାନଙ୍କର ଶାସ୍ତ୍ରରେ ସ୍ୱର୍ଗ ଓ ନରକ ସମ୍ବନ୍ଧରେ ଅନେକ ପ୍ରକାରର ବର୍ଣ୍ଣନା ବିଦ୍ୟମାନ । ଏକ ଏକ ପ୍ରକାର ପାପରେ ଏକ ଏକ ପ୍ରକାର ନରକକୁ ଗମନ କରିବାକୁ ହୁଏ । ଏକ ଏକ ପ୍ରକାର ଧର୍ମାନୁଷ୍ଠାନ ଫଳରେ ଏକ ଏକ ପ୍ରକାର ସ୍ୱର୍ଗକୁ ଯାଇ ସମ୍ଭୋଗ କରିବାକୁ ହୁଏ—ଇତ୍ୟାଦି ପ୍ରକାର ବର୍ଣ୍ଣନା ଶାସ୍ତ୍ରରେ ଅନେକ ଅଛି । ସେହି ସ୍ୱର୍ଗ ଲାଭ କରିବା ନିମନ୍ତେ ଲୋକମାନେ ନାନାବିଧ ବ୍ରତୋପବାସ କରିଥାନ୍ତି, କେହି କେହି କଠୋର—ଅତି କଠୋର ତପସ୍ୟା କରି ଈଶ୍ୱର ଦତ୍ତ ଶରୀର ପ୍ରତି ଅତ୍ୟାଚ୍ଚର କରିଥାନ୍ତି । କେତେକ ଲୋକ ସ୍ୱର୍ଗବାସୀ ହେବା ବାସନାରେ ନରଦ୍ଧଶସ୍ଥ ନିଷ୍ଠୁରତା ଅବଲମ୍ବନ କରି ପଶୁମେଧ ଏମନ୍ତ କି ନରମେଧ ପର୍ଯ୍ୟନ୍ତ କରୁଥିବା କଥା ପୁରାଣ ପ୍ରସିଦ୍ଧ । ସ୍ୱର୍ଗ, ନରକ ବୋଲି ପୃଥକ୍ ସ୍ଥାନ ଅଛି ଏବଂ ସେହି ସେହି ସ୍ଥାନରେ ସମସ୍ତଙ୍କୁ ପାପ ଓ ପୁଣ୍ୟର ଫଳ ଭୋଗ କରିବାକୁ ପଡ଼େ ଏ କଥା ଆବାଳ ବୃଦ୍ଧ ସମସ୍ତେ ବିଶ୍ୱାସ କରନ୍ତି । କିନ୍ତୁ ଏପରି ମଧ୍ୟ ଅନେକ ମତ ଦେଖାଯାଏ ଯେ ସ୍ୱର୍ଗ ଓ ନରକ ସ୍ଥାନବିଶେଷରେ ଆବଦ୍ଧ ନୁହେଁ, ତାହା କେବଳ ଅସ୍ମମାନଙ୍କ ମାନସିକ ଅବସ୍ଥାର ତାରତମ୍ୟ ମାତ୍ର ।

ଶ୍ରୀଯୁକ୍ତ ଶ୍ରୀ ରାମଶଙ୍କର ରାୟ ଓକିଲ ମହାଶୟ, ( "ମୁକୁରର" ୭ମ ଭାଗ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ) "ସତ୍ୟଧର୍ମ" ପ୍ରବନ୍ଧରେ ଲେଖିଅଛନ୍ତି—

"ସୁଖ ବିଶେଷର ଭୋଗ ଓ ତହିଁର ସାମଗ୍ରୀ ପ୍ରାପ୍ତିର ନାମ ସ୍ୱର୍ଗ, ଦୁଃଖ ବିଶେଷର ଭୋଗ ଓ ତହିଁର ସାମଗ୍ରୀ ପ୍ରାପ୍ତିର ନାମ ନରକ । ଦେହଧାରୀ ଆପଣା କାର୍ଯ୍ୟକଳାପର ଫଳସ୍ୱରୂପ ଇହଜନ୍ମ ବା ପରଜନ୍ମର ଧୃତ ଦେହରେ ଭୋଗ କରେ । ସ୍ୱର୍ଗ ଏବଂ ନରକ ବୋଲି ସ୍ୱତନ୍ତ୍ର କୌଣସି ସ୍ଥାନ ନାହିଁ । ଦୁଃଖ ଭୋଗକୁ ସର୍ବଦା ଭୟ କରି ସତ୍‌କାର୍ଯ୍ୟର ପରିହାର ପୂର୍ବକ ସତ୍‌କାର୍ଯ୍ୟରେ ରତ ହେଲେ ଇହକାଳ ଓ ପରକାଳରେ ସୁଖ ବା ସ୍ୱର୍ଗ ଲାଭ ହେବ ।" ବାସ୍ତବରେ ସ୍ୱର୍ଗ ଓ ନରକ ବୋଲି ପୃଥକ୍ ସ୍ଥାନ ନାହିଁ, ଏହା 'ହିନ୍ଦୁଶାସ୍ତ୍ର' ଦ୍ୱାରା ପ୍ରତିପନ୍ନ ହେଉଅଛି ତାହା ନିମ୍ନରେ ପ୍ରକାଶ କରା ଯାଉଅଛି—

ଯେଉଁମାନେ ଅହର୍ନିଶ ପରମେଶ୍ୱରଙ୍କ ସଙ୍ଗରେ ଆଉ ପରମେଶ୍ୱରଙ୍କର ଆନନ୍ଦ ଉପଭୋଗ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କ ସମ୍ବନ୍ଧରେ ସ୍ୱର୍ଗାଦି ଦେବଲୋକ ସମୂହକୁ ମଧ୍ୟ ଶାସ୍ତ୍ରରେ ନରକ ରୂପରେ ବର୍ଣ୍ଣନା କରା ଯାଇଅଛି । ଯଥା—ଜପ କାର୍ଯ୍ୟରେ କି କି ପ୍ରକାର ଦୋଷ ଘଟିଲେ ଜାପକମାନେ ନରକକୁ ଗମନ କରନ୍ତି, ସେହି ବିଷୟଟି ଭୀଷ୍ମଦେବ, ଯୁଧିଷ୍ଠିରଙ୍କ ନିକଟରେ ବର୍ଣ୍ଣନା କରିଥିଲେ, ଯୁଧିଷ୍ଠିର ପ୍ରଶ୍ନ କଲେ—"ଜାପକମାନେ ଶୁଭକାର୍ଯ୍ୟରେ ପ୍ରବୃତ୍ତ ହୋଇ ମଧ୍ୟ ସାମାନ୍ୟ ଦୋଷ ଓ ଦୁର୍ବଳତା ହେତୁ ନରକକୁ ଗମନ କରନ୍ତି, ସେ ନରକ କିପରି ?" ତାହାର ଉତ୍ତରରେ ଭୀଷ୍ମଦେବ ଯୁଧିଷ୍ଠିରଙ୍କ ନିକଟରେ ସ୍ୱର୍ଗାଦି ଦେବଲୋକର ବର୍ଣ୍ଣନା କରିଥିଲେ । ସେହି ସ୍ୱର୍ଗାଦି ଦେବତା ସ୍ଥାନମାନଙ୍କୁ ଭୀଷ୍ମ ନରକ ବୋଲି ବ୍ୟକ୍ତ କରିଥିବାରୁ ଯୁଧିଷ୍ଠିର ତାହାର କାରଣ ପଚାରିଲେ । ଭୀଷ୍ମ କହିଲେ—"ପରମାତ୍ମାଙ୍କ ସ୍ଥାନଠାରୁ ଉକ୍ତ ସ୍ୱର୍ଗାଦି ସକଳ ଲୋକ ଅନେକ ଅଂଶରେ ନିକୃଷ୍ଟ, ଏଥିପାଇଁ ଜାପକମାନଙ୍କ ସମ୍ବନ୍ଧରେ ସେହିସବୁ ସ୍ଥାନକୁ ନରକରୂପେ କୀର୍ତ୍ତନ କରାଯାଇଅଛି । ମହାଭାରତ ମୋକ୍ଷପର୍ବରେ ଲିଖିତ ଅଛି ଯେ—

"କୀଦୃଶଂ ନରକଂ ଯାତି ଜାପକୋ ବର୍ଣ୍ଣୟସ୍ୱ ମେ ।
କୌତୂହଳଂ ହି ମେ ରାଜଂ ସ୍ତଭବାନ ବକ୍ତୁମର୍ହସି ।"

ଯୁଧିଷ୍ଠିର କହିଲେ—"ପିତାମହ ! ଜାପକମାନେ କିପରି ନରକକୁ ଗମନ କରନ୍ତି ତାହା ଶୁଣିବାକୁ ମୋର ନିତାନ୍ତ କୌତୂହଳ ଉପସ୍ଥିତ ହୋଇଅଛି, ଆପଣ ତାହା କୀର୍ତ୍ତନ କରନ୍ତୁ ।"

କୌତୂହଳର କାରଣ ଟୀକାକାର ଲେଖିଅଛନ୍ତି—
"କୌତୁହଲଂ ଶୁଭ କର୍ତ୍ତୁରପି ଅଶୁଭ ନିରୟ ପ୍ରାପ୍ତି ରିତ୍ୟାଶ୍ଚର୍ଯ୍ୟଂ ।"

ଅର୍ଥାତ୍ ଜପରୂପ ଶୁଭ କାର୍ଯ୍ୟରେ ପ୍ରବୃତ୍ତ ଲୋକମାନଙ୍କର ଅଶୁଭ ନରକ ପ୍ରାପ୍ତି ହୁଏ ।" ଯୁଧିଷ୍ଠିରଙ୍କର ଏହି କୌତୁହଳଜନକ ଉକ୍ତି ଶୁଣି ଭୀଷ୍ମ କହିଲେ—

"ଦିବ୍ୟାନି କାମରୂପାଣି ବିମାନାନି ସଭାସ୍ତଥା;
ଆକ୍ରୀଡ଼ା ବିବିଧା ରାଜନ୍ ପଦ୍ମନ୍ୟଶ୍ଚୈବ କାଞ୍ଚନାଃ ।
ମରୁତାଂ ଲୋକପାଲାନାଂ ଶୁକ୍ରସ୍ୟାଥ ବୃହସ୍ପତେଃ ।
ଚତୁର୍ଣ୍ଣାଂ ବିଶ୍ୱଦେବାନାଂ ସାଧ୍ୟାନାମଶ୍ୱିନୋଽରପି ।
ରୁଦ୍ରାଦିତ୍ୟବସୂନାଞ୍ଚ ତଥାନ୍ୟେଷାଂ ଦିବୌକସାଂ ।
ଏତେ ବୈନିରୟାସ୍ତାତ ସ୍ଥାନସ୍ୟ ପରମାତ୍ମନଃ ।

ଲୋକପାଳ ଚତୁଷ୍ଟୟ, ଶୁକ୍ର, ବୃହସ୍ପତି, ଅଶ୍ୱିନୀକୁମାରଦ୍ୱୟ, ମରୁତ୍, ବିଶ୍ୱଦେବ, ସାଧ୍ୟଗଣ, ରୁଦ୍ର, ଆଦିତ୍ୟ, ବସୁ ସକଳ ଏବଂ ଅନ୍ୟାନ୍ୟ ଦେବତା-ମାନଙ୍କର ଯେ ସବୁ ଦିବ୍ୟ କାମରୂପ ବିମାନ, ସଭା, ବିବିଧ କ୍ରୀଡ଼ାକାନନ ଏବଂ କାଞ୍ଚନମୟ କମଳ ସୁଶୋଭିତ ସରୋବର ପ୍ରଭୃତି ଭୋଗ୍ୟ ବସ୍ତୁ ଅଛି, ସେ ସମୁଦାୟହିଁ ନରକ ରୂପେ ଉଲ୍ଲିଖିତ ହୋଇଅଛି, କାରଣ ପରମାତ୍ମାଙ୍କ ସ୍ଥାନଠାରୁ ସେହି ସବୁ ବସ୍ତୁ ଅନେକାଂଶରେ ନିକୃଷ୍ଟ ।

ଏତେ ବୈ ନିରୟାଃ ପ୍ରୋକ୍ତାଃ ସର୍ବ ଏବ ଯଥାକ୍ରମଂ ।
ଡସ୍ୟ ସ୍ଥାନ ବରସ୍ୟେହ ସର୍ବେ ନିରୟସଞ୍ଜ୍ଞିତାଃ ।

"ଉକ୍ତ ସମୁଦାୟ ସ୍ଥାନ ବ୍ରହ୍ମପଦ ପ୍ରାପ୍ତି ଅପେକ୍ଷା ନିତାନ୍ତ ନିକୃଷ୍ଟ ବୋଲି ନିରୟପଦ ବାଚ୍ୟ ହୋଇଥାଏ" ବିଷ୍ଣୁପୁରାଣରେ ଲିଖିତ ଅଛି ଯେ—

ବିଷ୍ଣୁ ସଂସ୍ମରଣାତ୍ କ୍ଷୀଣଃ ସମସ୍ତ କ୍ଲେଶ ସଞ୍ଚୟଃ ।
ମୁକ୍ତିଂ ପ୍ରୟାତି ସ୍ୱର୍ଗାପ୍ତିସ୍ତସ୍ୟ ବିଘ୍ନୋଽନୁମୀୟତେ ।

ବିଷ୍ଣୁ ଅର୍ଥାତ୍ ପରମେଶ୍ୱରଙ୍କୁ ଭକ୍ତିଭାବରେ ହୃଦୟରେ ସ୍ମରଣ କଲେ ମନୁଷ୍ୟମାନେ ସମସ୍ତ କ୍ଲେଶ, କ୍ଲେଶମୂଳକ ରୋଗାଦିରୁ ନିଷ୍କୃତି ଲାଭ କରନ୍ତି ଏବଂ ମୁକ୍ତି ପ୍ରାପ୍ତ ହୁଅନ୍ତି । ସେ ଅବସ୍ଥାରେ ସ୍ୱର୍ଗ ପ୍ରାପ୍ତି କେବଳ ବିଘ୍ନରୂପେ ଅନୁମିତ ହୋଇଥାଏ । (ସୁତରାଂ ସେ ସ୍ୱର୍ଗ ମଧ୍ୟ ତେତେବେଳେ ସାଧକ ପକ୍ଷରେ ନରକର ରୂପାନ୍ତର ଭିନ୍ନ ଅନ୍ୟ କିଛି ନୁହେଁ । )

ତସ୍ମାଦ୍ ଦୁଃଖାତ୍ମକଂ ନାସ୍ତି ନ ଚ କିଞ୍ଚିତ ସୁଖାତ୍ମକଂ ।
ମନସଃ ପରିଣାମୋଽୟଂ ସୁଖଦୁଃଖାଦି ଲକ୍ଷଣଃ ।

ବିଷ୍ଣୁ ପୁରାଣ ।

ଅତଏବ ସ୍ୱର୍ଗ ବା ନରକ କୌଣସି ବସ୍ତୁହିଁ ଦୁଃଖାତ୍ମକ ବା ସୁଖାତ୍ମକ ବୋଲି ପୃଥକ୍ ନିର୍ଦ୍ଦିଷ୍ଟ ନାହିଁ । ସୁଖ ବା ଦୁଃଖ କେବଳ ଅନ୍ତଃକରଣର ପରିଣାମ ମାତ୍ର ।

ବସ୍ତ୍ୱେକମେବ ଦୁଃଖାୟ ସୁଖାୟେର୍ଷ୍ୟୋଭବାୟ ଚ ।
କୋପାୟ ଚ ଯତସ୍ତସ୍ମାଦ୍ ବସ୍ତୁ ବସ୍ତ୍ୱାତ୍ମକଂ କୁତଃ ।

ବିଷ୍ଣୁପୁରାଣ ।

ଯେତେବେଳେ ଏକମାତ୍ର ବସ୍ତୁହିଁ ମନର ଅବସ୍ଥାନୁସାରେ କେତେବେଳେ ଦୁଃଖର କାରଣ, କେତେବେଳେ ସୁଖର କାରଣ, କେତେବେଳେ ବା ଈର୍ଷ୍ୟୋ-ତ୍ପାଦକ, କେତେବେଳେ ବା କ୍ରୋଧୋଦ୍ଦୀପକ ହୋଇଥାଏ, ତେତେବେଳେ ସୁଖ ବା ଦୁଃଖ ଯେକୌଣସି ବସ୍ତୁବିଶେଷରେ ନିହିତ ଅଛି ଏହା କିପରି ବୋଲିଯାଇ ପାରେ ?

ମନଃ ପ୍ରୀତିକରଃ ସ୍ୱର୍ଗୋ ନରକ ସ୍ତଦ୍ବିପର୍ଯ୍ୟୟଃ ।
ନରକସ୍ୱର୍ଗସଂଜ୍ଞେ ବୈ ପାପପୁଣ୍ୟେ ଦ୍ୱିଜୋତ୍ତମ ।

ବିଷ୍ଣୁପୁରାଣ ।

ହେ ଦ୍ୱିଜୋତ୍ତମ ! ଯାହା କିଛି ମନର ପ୍ରୀତିକର ତାହାହିଁ ସ୍ୱର୍ଗ ଏବଂ ଯାହା ତାହାର ବିପରୀତ ତାହାହିଁ ନରକ । ଅତଏବ ସ୍ୱର୍ଗ ଓ ନରକ ସ୍ଥାନ-ବିଶେଷରେ ଆବଦ୍ଧ ନୁହେଁ, ପୁଣ୍ୟ ଓ ପାପର ନାମାନ୍ତରହିଁ ସ୍ୱର୍ଗ ଓ ନରକ ।

ଶାସ୍ତ୍ରବର୍ଣ୍ଣିତ ସ୍ୱର୍ଗ ଓ ନରକାଦି ବୃତ୍ତାନ୍ତ ସମସ୍ତ ଯେ ମିଥ୍ୟା ଓ କଳ୍ପିତ, ତାହା ଏହି ଶ୍ଳୋକର ଟୀକାରେ ଭଗବାନ୍ ଶ୍ରୀଧରସ୍ୱାମୀ ନିମ୍ନଲିଖିତ ରୂପେ ବର୍ଣ୍ଣନା କରିଅଛନ୍ତି । ଯଥା —

ଇଦାନୀଂ ବିଦୁଷାମେବ ଯୋଗ୍ୟଂ ବ୍ରହ୍ମ ଜ୍ଞାନାତ୍ମକଂ
ସର୍ବପ୍ରାପ୍ତ୍ୟୁର୍ଦ୍ଧ୍ୱଂ ନିମ୍ନରସ୍ଥକୃତ୍ୟ ପୂର୍ବୋକ୍ତସ୍ୟ ସ୍ୱର୍ଗ ନରକ
ତନ୍ତ୍ର ସାଧନାଦି ସର୍ବ ପ୍ରପଞ୍ଚସ୍ୟ ମିଥ୍ୟାତ୍ୱମାହ, ମନଃପ୍ରୀତି
ସାର୍ଦ୍ଧଂ ପଞ୍ଚଭିଃ, ତଦ୍ବିପର୍ଯ୍ୟୟଃ ମନୋଦୁଃଖକରଃ, ଅତଃ
ସ୍ୱପ୍ନଗତ ମନଃ ପ୍ରୀତି ଦୁଃଖକର ବସ୍ତୁବତ୍ ସ୍ୱର୍ଗ ନରକୌ
ମିଥ୍ୟୈବେତି ଭାବଃ । ମିଥ୍ୟାଭୂତ ନରକ ସ୍ୱର୍ଗ ହେତୁତ୍ୱାତ୍
ପାପପୁଣ୍ୟେ ଅପି ମିଥ୍ୟୈବ ଇତ୍ୟାଶୟେନାହ ନରକେତି ।
ଆମୁଷ୍ମିକ ତମିତି ସାଧନେ ସାଧ୍ୟବଦୁପଚରିତ ପାପ ପୁଣ୍ୟ ଏବ
ନରକସ୍ୱର୍ଗସଂଜ୍ଞେ ଇତ୍ୟୁକ୍ତଂ ।

ପାପାଚରଣ କଲେ ମନୁଷ୍ୟ ମୃତ୍ୟୁର ପରେ ଯେ ନରକ ନାମକ ବିଶେଷ କୌଣସି ଗୋଟିଏ ଯନ୍ତ୍ରଣାପୂର୍ଣ୍ଣ ସ୍ଥାନକୁ ଯାଇ ଯନ୍ତ୍ରଣା ଭୋଗ କରିବ ଏବଂ ପୁଣ୍ୟାନୁଷ୍ଠାନ କଲେ ଯେ ସେହିପରି ସ୍ୱର୍ଗ ନାମକ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ସୁଖଭୋଗ କରିବ ତାହା ନୁହେଁ । ସ୍ୱର୍ଗ ଓ ନରକ ନାମକ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । ସେ ସବୁ ଶାସ୍ତ୍ରକାରମାନଙ୍କର କଳ୍ପନା ମାତ୍ର । ଶାସ୍ତ୍ରକାର-

ମାନଙ୍କର ସେପରି କଳ୍ପନା କରିବାର ଉଦ୍ଦେଶ୍ୟ ମଧ ଥିଲା । ସେହି ଉଦ୍ଦେଶ୍ୟ ଅଜ୍ଞାନବ୍ୟକ୍ତିମାନଙ୍କୁ ନରକର ଭୟ ଏବଂ ସ୍ୱର୍ଗର ଲୋଭ ଦେଖାଇ ସତ୍ପଥରେ ରଖିବାର ଚେଷ୍ଟା ମାତ୍ର ।

ଏହାବୋଲି ସେପରି କେହି ଏମନ୍ତ ବିବେଚନା ନ କରନ୍ତୁ ଯେ, ଅନୁଷ୍ଠିତ ପାପ ପୁଣ୍ୟର ଫଳାଫଳ କାହାକୁ ଭୋଗ କରିବାକୁ ହେବନାହିଁ । ବସ୍ତୁତଃ ସ୍ୱର୍ଗ ନରକ ନାମରେ କୌଣସି ପୃଥକ୍ ସ୍ଥାନ ନ ଥିଲେ ମଧ ପାପ ପୁଣ୍ୟର ଫଳ ସମସ୍ତଙ୍କୁ ଭୋଗ କରିବାକୁ ହେବ ।

ଯେ ବ୍ୟକ୍ତି ସର୍ବଦା ପାପାଚରଣ କରେ ଏବଂ ସର୍ବଦା ପାପସଂସର୍ଗରେ ଥାଇ ପାପଚିନ୍ତା ଓ ପାପଚର୍ଚ୍ଚାରେ ଜୀବନ ଅତିବାହିତ କରେ, ତାହା ପକ୍ଷରେ ଏହି ପୃଥିବୀ ନରକ ସ୍ୱରୂପ, ତାହାର ନିଜ ଜୀବନହିଁ ସର୍ବଦା ଚତୁର୍ଦ୍ଦିଗରେ ନରକର ଗନ୍ଧ ବିସ୍ତାର କରିଥାଏ । ତାହାର ହୃଦୟରେ ଅଶାନ୍ତିରୂପ ଘୋର ନରକାଗ୍ନି ପ୍ରଜ୍ୱଳିତ ରହିଥାଏ । ସେ ନିଜେ ଯଦି ଅଚୈତନ୍ୟ ଥିବାରୁ ଅନେକ ସମୟରେ ଆପଣାକୁ ନରକସ୍ଥ ବା ପଶୁଭାବ ଗ୍ରସ୍ତ ବୋଲି ବୁଝିପାରେ ନାହିଁ, ତଥାପି ଜ୍ଞାନୀ ସାଧୁମାନେ ସ୍ପଷ୍ଟ ଦେଖିପାରନ୍ତି ଯେ ସେ ସର୍ବଦା ନରକ ମଧ୍ୟରେ ବସତି କରିଅଛି । ନରକର ଅପବିତ୍ର ଅସ୍ୱାସ୍ଥ୍ୟକର ବାୟୁ ତାହାର ନିଶ୍ୱାସ ପ୍ରଶ୍ୱାସ ସହିତ ବହୁଅଛି । ସେ ସ୍ୱର୍ଗର ଅଧିକାରୀ ଅମୃତର ଅଧିକାରୀ ହୋଇ ମଧ ନରକର ଜୀବ ହୋଇ ରହିଅଛି, ଏବଂ ଦେବଭାବ ଓ ମନୁଷ୍ୟ ଭାବର ପରିବର୍ତ୍ତେ ପଶୁଭାବ ଓ ପିଶାଚ ଭାବର ସେବାରେ ଜୀବନ କ୍ଷୟ କରୁଅଛି, ଯାହାହେଉ ସମୟ ସମୟରେ ତାହାର ଯେ ଚୈତନ୍ୟର ଉଦୟ ହୁଏ ନାହିଁ ତାହା ନୁହେଁ, ସେ ଅନେକ ସମୟରେ ଆପଣାର ଅବସ୍ଥା ବୁଝିପାରେ ଏବଂ ହୁଏତ ଏକାବେଳକେ ସଂଶୋଧିତ ହୋଇଯାଏ ।

ଅନ୍ୟତ୍ର ଏକସ୍ଥାନରେ ଏହି ଭାବଟି ବର୍ଣ୍ଣିତ ହୋଇଅଛି । ଯଥା—

ଯଥା କାରୀ ଯଥା ଚ୍ଚାରୀ ତଥା ଭବତି । ସାଧୁକାରୀ ସାଧୁର୍ଭବତି, ପାପକାରୀ ପାପୋଭବତି । ପୁଣ୍ୟ ପୁଣ୍ୟେନ କର୍ମଣା ଭବତି ପାପଂ ପାପେନ ।

ଯେଉଁ ମନୁଷ୍ୟ ଯେପରି କର୍ମ କରେ ବା ଯେପରି ଆଚରଣ କରେ, ତାହାର ସେହିପରି ଗତି ହୁଏ । ଯେ ସାଧୁ କର୍ମ କରନ୍ତି ସେ ସାଧୁ ହୁଅନ୍ତି ଅର୍ଥାତ୍ କ୍ରମଶଃ ସାଧୁମାନଙ୍କ ଆଡ଼କୁ ସେ ଗତି କରନ୍ତି । ଆଉ ଯେ ପାପ କର୍ମ କରେ ସେ ପାପୀ ହୁଏ ଅର୍ଥାତ୍ ତାହାର ଦେବଭାବ ସବୁ ମାନବଭାବ ଧାରଣ କରେ ତାହାର

ପଶୁତ୍ବର ସମସ୍ତ ଉତ୍ତେଜିତ ହୋଇ କ୍ରମରେ ତାହାକୁ ଅଧିକତର ପାପରେ ନିମଗ୍ନ କରେ ଏବଂ ମନୁଷ୍ୟତ୍ବ ବଦଳରେ ତାକୁ ପଶୁତ୍ବକୁ ଘେନିଯାଏ । ସେ ତେତେବେଳେ ପଶୁମାନଙ୍କ ସହିତ ସମଭାବ ଧାରଣ କରେ, ପୁଣ୍ୟ କର୍ମର ଫଳରେ ଆତ୍ମା ପବିତ୍ର ହୁଏ, ପାପ କର୍ମର ଫଳରେ ଆତ୍ମା ପାପମୟ ହୋଇ ଉଠେ ।

ଭାଗବତର ୧୧ଶ ସ୍କନ୍ଧର ୧୯ଶ ଅଧ୍ୟାୟର ୧୯ଶ ୪୨ ଓ ୪୩ ଶ୍ଳୋକରେ ଉଦ୍ଧବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଉତ୍ତରରେ ଏହିପରି ଲିଖିତ ଅଛି ଯେ—

ସ୍ବର୍ଗଃ ସତ୍ତ୍ବଗୁଣୋଦୟଃ । ୪୨ ।
ନରକସ୍ତମ ଉନ୍ନାହୋ । ୪୩ ।

ସତ୍ତ୍ବ ଗୁଣର ଉଦୟ ହେବାହିଁ ସ୍ବର୍ଗ ଏବଂ ତମୋଗୁଣ ପ୍ରବଳ ହେବାର ନାମ ନରକ ।

ଭଗବାନ ଶ୍ରୀଧରସ୍ବାମୀ ଉକ୍ତ ଶ୍ଳୋକଦ୍ୱୟର ଟୀକାରେ ଲେଖି ଅଛନ୍ତି—

ସତ୍ତ୍ବ ଗୁଣସ୍ୟୋଦୟଃ ଉଦ୍ରେକଃ ସ୍ବର୍ଗୋ ନେନ୍ଦ୍ରାଦି ଲୋକଃ ॥ ୪୨ ॥
ତମସ ଉନ୍ନାହ ଉଦ୍ରେକଃ ସ ନରକଃ ନତାମିସ୍ରାଦିଃ ॥ ୪୩ ॥

ସତ୍ତ୍ବଗୁଣର ଉଦ୍ରେକ ହେବାହିଁ ପ୍ରକୃତ ସ୍ବର୍ଗ; ଇନ୍ଦ୍ରାଦିଲୋକ ସ୍ବର୍ଗ ନୁହେଁ । ତମୋଗୁଣର ଉଦ୍ରେକ ହେବାହିଁ ପ୍ରକୃତ ନରକ; ତାମିସ୍ର; ଅନ୍ଧତାମିସ୍ର, ପ୍ରଭୃତି ଲୋକ ସମୂହ ନରକ ନୁହେଁ । ପରମ ବିବେକୀ କବିବର ଶିହ୍ଲନ ମିଶ୍ର ଶାନ୍ତି-ଶତକରେ ଲେଖିଅଛନ୍ତି—

ଇନ୍ଦ୍ରସ୍ୟାଶୁଚିଶୂକରସ୍ୟଚ ସୁଖେ ଦୁଃଖେ ଚ ନାନ୍ତ୍ୟନ୍ତରଂ, ସ୍ୱେଚ୍ଛା କଳ୍ପନୟା ତୟୋଃ ଖଳୁ ସୁଧା ବିଷ୍ଠାଷ୍ଟ କାମ୍ୟାଶନଂ ।

ରମ୍ଭାଚ୍ୟୁଶୁଚି ଶୂକରୀଚ ପରମପ୍ରେମାସ୍ପଦଂ ମୃତ୍ୟୁତଃ ସନ୍ତ୍ରାସୋଽପିସମଃ ସ୍ୱକର୍ମ ଗତିଭିଷ୍ଟାନ୍ୟୋଽନ୍ୟଭାବଃ ସମଃ ।

ଦେବରାଜ ଇନ୍ଦ୍ର ଏବଂ ଅଶୁଚି ଶୂକର ଏ ଦୁହିଁଙ୍କ ମଧ୍ୟରେ ସୁଖ ଦୁଃଖ ଭୋଗ ବିଷୟରେ କିଛି ମାତ୍ର ପାର୍ଥକ୍ୟ ନାହିଁ । ସେମାନଙ୍କର ଇଚ୍ଛା ଓ କଳ୍ପନା ଅନୁସାରେ ବିଷ୍ଠା ଏବଂ ଅମୃତ ଉଭୟ ହିଁ ଉଭୟଙ୍କର କାମ୍ୟ ଆହାର । ଇନ୍ଦ୍ର

ରମ୍ଭା ସମ୍ଭୋଗରେ ଯେପରି ଆନନ୍ଦ ଅନୁଭବ କରିଥାନ୍ତି, ଶୂକର ଶୂକରୀ ସମ୍ଭୋଗରେ ମଧ୍ଯ ସେହିପରି ସୁଖ ବା ଆନନ୍ଦ ଅନୁଭବ କରିଥାଏ । ଉଭୟଙ୍କର ମୃତ୍ୟୁ ଭୟ ମଧ୍ଯ ସମାନ, ଏବଂ ସ୍ୱର୍ଗ କର୍ମଫଳ ନିବନ୍ଧନ ସେମାନଙ୍କର ପରସ୍ପର ସୁଖ ଦୁଃଖାଦି ଯେ କିଛି ଭାବ ତାହା ଉଭୟଙ୍କର ସମାନ । ( ଶ୍ରୀମଦ୍ଭାଗବତ ୧୦ମସ୍କନ୍ଧର ଏକ ସ୍ଥାନରେ ଏହି ଭାବ ଅବିକଳ ପ୍ରକାଶିତ ହୋଇଅଛି । ) ଯୋଗବାଶିଷ୍ଠ ସ୍ଥିତି-ପ୍ରକରଣରେ ଭଗବାନ୍ ବଶିଷ୍ଠ ଦେବ, ରାମଚନ୍ଦ୍ରଙ୍କୁ କହିଥିଲେ, "ପାତାଳରେ ଭୂତଳରେ ବା ସ୍ୱର୍ଗରେ ଏହି ପଞ୍ଚଭୂତ ମାତ୍ର ଅଛି, ଷଷ୍ଠ କେଉଁଠାରେ ନାହିଁ, ଅତଏବ ଏପ୍ରକାର ସ୍ୱର୍ଗାଦିକୁ ଉତ୍ତମ ବସ୍ତୁ କଳ୍ପନା କରି ଯେଉଁ ବ୍ୟକ୍ତି ତହିଁରେ ରତି ବା ଲାଳସା କରେ ସେ ମୂର୍ଖ ।" ଯଥା—

> ସର୍ବତ୍ର ପଞ୍ଚଭୂତାନି ଷଷ୍ଠଂ କିଞ୍ଚିନ୍ନବିଦ୍ୟତେ
> ପାତାଳେ ଭୂତଳେ ସ୍ୱର୍ଗେ ରତିମେତି କୁଧୀରତଃ

———

# ଲାଟ ଦର୍ଶନ

( ସପୂର୍ଣ୍ଣ ସୂତ୍ରକ )

—ପଣ୍ଡିତ ଶ୍ରୀ ନୀଳମଣି ବିଦ୍ୟାରତ୍ନ

## ‘‘ଜୟ ମାଦ୍ରାଜ’ ଗଭର୍ଣ୍ଣର ଜୟ’’

ନିବେଦନ ମୋର ଘେନରେ ପବନ !
କରିବେ ମାଦ୍ରାଜ-ଲାଟ ଆଗମନ,
କରିତୁ ମୃଦୁଳେ ସୌରଭ ବହନ
        ସେବାକର ତାଙ୍କ ନିକଟେ ଯାଇ
ଶୀତ ଦେଶବାସୀ ଅଟନ୍ତି ସେ ଯେଣୁ
ଶୀତଳ ପବନେ ତାଙ୍କ ସ୍ନେହ ତେଣୁ
ଘେନି ତୁ ସୁବାସ ସଙ୍ଗେ ଫୁଲ ରେଣୁ
        ଅଭିଳାଷ ଜଗି ରହିଥା ଗୃହିଁ ।

— ୨ —

ବିଶ୍ୱ ବିଦ୍ୟୋତନ ହେ ଦେବ ତପନ ।
ନ କର ତିଗ୍ମାଂଶୁ ସମୂହ ବର୍ଷଣ
ସୌମ୍ୟ-ରମ୍ୟ ରୂପ କରିଣ ଧାରଣ
        କର ଗଭର୍ଣ୍ଣର ରୂପ ଦର୍ଶନ
ଗୋଲାପ ଗଞ୍ଜନ କମନୀୟ ଦ୍ୟୁତି
ଶ୍ୱେତ ସତ୍ତ୍ୱମୟ ପ୍ରଶାନ୍ତ ମୂରତି
କି ବିଗ୍ରହ ଧାରୀ ବ୍ରିଟିଶ-ଶକତି ?
        ହିମକାନ୍ତ-କାନ୍ତି ମନ ମୋହନ ।

— ୩ —

ରଜନୀ ଆଗମେ ଶୁଣ କଳାକର ।
ବିସ୍ତାର ସୁଷମା ସୁଧାମୟ କର
ଅଥବା ତୁ ପଛେ ବ୍ୟୋମ ପରିହର
        ନ ଦେଖାଅ ତୋର କଳଙ୍କ ମୁଖ
ଆସୁଛନ୍ତି ଆମ୍ଭ ବ୍ରିଟିଶ-କେଶରୀ
ତୁ ହେବୁ ତାଙ୍କର କେଉଁ ଗୁଣେ ସରି ?
ନୁହନ୍ତି କଳଙ୍କମୟ ସେ ତୋ ପରି
        ସତ୍ତ୍ୱମୟ ତାଙ୍କ କାନ୍ତି ମୟୂଖ ।

—୪—

ଗାଅ ଶୁକ ଶାରୀ ଗାଅରେ କୋକିଳ
ମଧୁପ ଗୁଞ୍ଜନେ ହେଉ ସେ ମୁଖର
ପକାଇ ଜଳଧି ମହା ଗୀତ ତାଳ
ବୋଲ ଜୟ ଜୟ ମାନ୍ଦ୍ରାଜ ଲାଟ
କହେ କର ଯୋଡ଼ି କରୁଣା ନିଧାନ
ହେ ଜଗନ୍ନିୟନ୍ତ୍ରୀ ଦେବ ଭଗବାନ
କର ସୁଖ ଶାନ୍ତି ଲାଟଙ୍କୁ ପ୍ରଦାନ
ନିରାପଦ କର ଆସିବା ବାଟ ।

—୫—

ଚିଲିକାର ତୀରୁ ବଂଶୋଦ୍ଧାର ଯାଏ ।
ଘନକୁ ଚାତକ ଅନାଇଁଲା ପ୍ରାଏ
ଶୁଭାଗମ ମାର୍ଗେ ଅନାଇଁ ପ୍ରଜାଏ
ଉତ୍କଣ୍ଠିତ ଚିତ୍ତେ ଅଛନ୍ତି ବସି
ରାଜା ପ୍ରଜା ମିଳି ହୋଇ ଏକମନା
ସୁସଜ୍ଜ କରିବା ଲାଗି ଅଭ୍ୟର୍ଥନା
ଗଞ୍ଜାମ ଜିଲ୍ଲାର ବିଷମ ବେଦନା
ଜଣାଇବେ କାନ୍ଦି ଶରଣ ପଶି ।

—୬—

ସ୍ୱାଗତ ହେ ଦେବ ମନ୍ତ୍ରଦେଶ ପ୍ରଭୁ
କରି ଅଭ୍ୟର୍ଥନା ଓଡ଼ିଆଏ ସବୁ
ପଦେ ଅଧେ ଦୁଃଖ ଶ୍ରୀମୁଖରେ କହିବୁ
ତବ ଆଜ୍ଞା ହେଲେ ହେ ମହାମାନ୍ୟ
ଯଥା ସମୟରେ ମେଘ ଗଲା ଛାଡ଼ି
ଥିଲା ଯେତେ ଚିପ ବୁଡ଼ି ଗଲା ପୋଡ଼ି
ଦେଖି ଦୁଃଖେ ଦୁଃଖୀ ହେଲେ ମୁଣ୍ଡକୋଡ଼ି
ମରିଗଲା ଫଳ, ନୋହିଲା ଧାନ୍ୟ ।

—୭—

ଓଡ଼ିଆ ଜାତିଟି ଜଗତେ ଗରିବ ।
କହିଲେ ତାଙ୍କର ଦୁଃଖ ନ ସରିବ
ସ୍ୱଜନଙ୍କ ସଙ୍ଗେ ଗୃହସ୍ଥ ମରିବ
ନ କରିବ ଯେବେ କୃପା ଆପଣ ।

ମନ ଦୁଃଖ ଆଉ କା'ଆଗେ କହିବୁ
ବହୁ କଷ୍ଟ ସହି କପଣ ରହିବୁ
କାହିଁ ଅଛି ସ୍ଥାନ କେଉଁ ଠାକୁ ଯିବୁ
ନୁହି ଦେବ ଚଣ୍ଡେ କୃପା କୃପଣ ।

—୮—

ତବ ଶୁଭାଗମେ ଗଞ୍ଜାମ ନିବାସୀ
ଆନନ୍ଦ ସରତେ ଯାଉଛନ୍ତି ଭାସି
ହୃଦୟର ରାଜଭକ୍ତି ପରକାଶି
ବାନ୍ଧିଛନ୍ତି ରାଜମାର୍ଗେ ତୋରଣ,
ଭୁତ ଦେବଦାରୁ ପଲ୍ଲବ ସକଳ
ଗୁନ୍ଥି ବାନ୍ଧିଛନ୍ତି କରଣ କୌଶଳ
ରମ୍ଭାତରୁ ଦବ୍ୟ ବ୍ରିଟିଶ ଚସ୍ଵାଲ
ବିମଣ୍ଡିତ ଦୁର୍ଗ ଭୂମି କାରଣ ।

—୯—

ଗଞ୍ଜାମ ଜିଲ୍ଲାର ଯେତେକ ଉତ୍କଳୀ
ଥିଲେ ପୂର୍ବକାଳେ ଜ୍ଞାନେ ଧନେ ବଳୀ
ପାରୁ ନ ଥିଲେ କେ ତାଙ୍କ ଗୁଣ କଳି
ସେ ଏବେ ଅଟନ୍ତି ମୂର୍ଖ ନିର୍ଧନ !
ନାନା ଜାତି ଲୋକେ ନାନା ଦେଶୁ ଆସି
ରହିଲେ ସ୍ଵଭାଷା ମହତ୍ତ୍ଵ ପ୍ରକାଶି
ଭାଷା ହୀନ ହେଲେ ଉତ୍କଳ ନିବାସୀ
ଜାତୀୟ ସାହିତ୍ୟ ହେଲା ଉଚ୍ଛନ୍ନ ।

—୧୦—

ଏ ଦେଶର ବାୟୁ ଏ ଦେଶର ଜଳ
ଅଟେ ଓଡ଼ିଆଙ୍କ ଜୀବନ ସମ୍ବଳ
ପର ପ୍ରାଏ ଘରେ ରହିଛୁ କେବଳ
ଆମ୍ଭର ନୁହଇ ଆମ୍ଭର ମାଟି,
ଖାଇ ପାରୁନାହୁଁ ଆମ୍ଭେ ଆମ୍ଭ ଦାନା
ଆହୁର ଭୋଗୁଛୁଁ ଅସୁବିଧା ନାନା
ଆମ୍ଭେ ଦୀନ ଆମ୍ଭ ମାତୃଭୂମି ଦୀନା
ତଥାପି ନ ଯିବେ ଆମ୍ଭର ପାଟି ।

—୧୧—

ଖଲ୍ଲିକୋଟ ପୁଣି ପାରଳା ଖେମଣ୍ଡି
ସ୍ଥାପିଣ କଲେଜ ଗଞ୍ଜାମକୁ ମଣ୍ଡି
ଦେଶବାସୀ ଚିର ଅଜ୍ଞାନତା ଖଣ୍ଡି
ଅମର ହୋଇଲେ ସେ ରଜାମାନେ ।
ନୋହୁଥାନ୍ତା ଯେବେ କରୁଣା ତାଙ୍କର
ଅଜ୍ଞାନ ଅନ୍ଧାରେ ଏ ଦେଶୀ ନକର
ଘାଣ୍ଟି ହେଉଥାନ୍ତେ କୃପା ରତ୍ନାକର !
ଗାଉଥାନ୍ତେ ବସି ବିଷାଦ ଗାନେ ।

—୧୨—

ଛତ୍ରାସ୍ତ୍ରୀ ସାହସୀ ଅଟନ୍ତି ଓଡ଼ିଆ
ହୋଇଥିଲେ ଧନେ ଅତ୍ୟନ୍ତ ବଢ଼ିଆ
ସ୍ୱକୀୟ ସାହିତ୍ୟ ପଢ଼ିଛୁ ପଢ଼ିଆ
ଯେତେ ବଡ଼ ତେତେ ହେଲେଣି ସାନ ।
ହୋଇବ ଯେସନ ସାହିତ୍ୟ-ଉନ୍ନତ
ଦୂର ହେବ ଯେହ୍ନେ ଦେଶର ଦୁର୍ଗତ
ତେସନ କରୁଣା କର ମହାମତ
କର ଆମ୍ଭ ପ୍ରତି କରୁଣା ଦାନ ।

—୧୩—

ଗଞ୍ଜାମ ଜିଲ୍ଲାକୁ ମିଶାଅ ଉତ୍କଳେ
ଭସାଅ ଉତ୍କଳ ସୁତେ ସୁଖ ଜଳେ
ରହୁ ତବ ଯଶ ଅବନୀ ମଣ୍ଡଳେ
ଆମ୍ଭ ପୁତ୍ର ପୌତ୍ରେ ଗାଆନ୍ତୁ ଯଶ ।
ଯାଙ୍କ ରାଜ୍ୟେଁ ଚନ୍ଦ୍ର ଆବର ତପନ
ନ ହୁଅନ୍ତି ଅସ୍ତମିତ କଦାଚନ
ସେ ପଞ୍ଚମଜର୍ଜ ପ୍ରଜା ଯଶେ ଧନ
ଅଟୁଁ ଆମ୍ଭେ, ତୁମ୍ଭେ ଜାଣ ଅବଶ୍ୟ ।

—୧୪—

ଅତି ଦୀନ ହୀନ ଓଡ଼ିଆ ସକଳ
ତୈଲଙ୍ଗ ହସ୍ତେ ହୋଇଛୁଁ ଦୁର୍ବଳ
ତୁମ୍ଭେ ଦେବ, ଆମ୍ଭ ଦୁର୍ବଳର ବଳ
ଜଣାଉଛୁ ତେଣୁ ମନୋ ବେଦନା ।

ଗଞ୍ଜାମର ଯେତେ ରାଜା ଜମିଦାର
କର ପୂର୍ବ ବଳେ ବଳୀ ମହାଦାର
ତାଙ୍କର ମଙ୍ଗଳେ ମଙ୍ଗଳ ଆମ୍ଭର
ଉଡ଼ାଅ ସଦସ୍ତେ କରୁଣା ବାନା ।

—୧୫—

ବୀର କୃପାମୟ ଦେବ ଗଜପତି
ବୃହତ୍ ଖେମୁଣ୍ଡି ମଣ୍ଡନ ଭୂପତି
କୃପା କର ଯେହ୍ନେ ଉତ୍କଳୀଙ୍କ ପ୍ରତି
ହେବାକୁ ଓଡ଼ିଆ ରୁଚିର ନିବାସ ।

ଅକାତରେ ଦାନ କରିଛନ୍ତି ଧନ
ତାଙ୍କ ପ୍ରତି ଦେବ ହୋଇ ସୁପ୍ରସନ୍ନ
ଶୁଭଦିଅ ଏହି ରୁଚିର ନିକେତନ
ହେଉ କାଳେ କାଳେ ଯଶ ପ୍ରକାଶ ।

—୧୬—

ଗଞ୍ଜାମୀ ଓଡ଼ିଆ କରୁଁ ବଡ଼ ଆଶା
ଯେସନେ ସଂସ୍କୃତ ଦିବ୍ୟ ଦେବଭାଷା
ଶିକ୍ଷା ସୁବ୍ୟବସ୍ଥା କର ମହାଯଶା
ପୁଣି ରାଜକାର୍ଯ୍ୟ ପ୍ରାପ୍ତି କ୍ଷମତା ।

ଦେଇ ଯାଅ ଲାଟ କରୁଅଛୁ ଅଳି
ତବ ଶୁଭେ ଦେବେ ଦେବୁ ପୁଷ୍ପାଞ୍ଜଳି
ଲଭିବେ ଉନ୍ନତି ଗଞ୍ଜାମେ ଉତ୍କଳୀ
ଦୂର ହେବ ଜନ ମାନସ ବ୍ୟଥା ।

—୧୭—

ସହି ବହୁ କଷ୍ଟ ଆମ୍ଭ ପାଇଁ ଲାଟ
ଆସିଅଛ ଲର୍ଡ଼ ବହୁ ଦୂର ବାଟ
ଦୂର କରିଯାଅ ଓଡ଼ିଆଙ୍କ କଷ୍ଟ
ଚିରଦିନ ଯଶ ରହିବ ତବେ ।

ବନ୍ଧି ପାଦେ ଆମ୍ଭେ କରୁଛୁଁ ବିନତି
ବୃଦ୍ଧି ଲଭୁ ଆୟୁ ସମ୍ପଦ ସନ୍ତତି
ଦୟା ଥାଉ ପୀନ ଓଡ଼ିଆଙ୍କ ପ୍ରତି
ଗାଉଥିବୁ ତବ ସୁଖ୍ୟାତି ସର୍ବେ ।

—***—

# କବିଶେଖର ଚିନ୍ତାମଣିଙ୍କ ଦୃଷ୍ଟିରେ ନୀଳମଣି ବିଦ୍ୟାରତ୍ନ

ଶ୍ରୀ ପଠାଣି ପଟ୍ଟନାୟକ

ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ "ଜ୍ଞାନକୋଷ" ଗ୍ରନ୍ଥରେ ବିଦ୍ୟାରତ୍ନଙ୍କର କାର୍ଯ୍ୟାବଳୀ ଓ ଦେଶସେବାର ଭୂୟସୀ ପ୍ରଶଂସା କରାଯାଇ ଶେଷରେ କ୍ଷୋଭ ପ୍ରକାଶ କରାଯାଇଥିଲା । ଏହାପରେ—"ଦୁଃଖର ବିଷୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଜାତୀୟ ଋଣ ବିଷୟରେ ଉତ୍କଳବାସୀ ଏ ପର୍ଯ୍ୟନ୍ତ ସଚେତନ ହୋଇ ନାହାନ୍ତି ।"

ବାସ୍ତବିକ ଆମ ସମାଜରେ ଗୁଣୀପୂଜାର ବଡ଼ ଅଭାବ ପରିଲକ୍ଷିତ ହୋଇଥାଏ । ଆମର ଶିକ୍ଷିତ ଗୋଷ୍ଠୀ ପ୍ରାୟତଃ ଏ ଦେଶର ଇତିହାସ ସଂସ୍କୃତି ଓ ପରମ୍ପରା ବିଷୟରେ ଅବଗତ ହେବାପାଇଁ ସଚେତନ ପ୍ରୟାସ କରି ନ ଥାନ୍ତି । ତେଣୁ ଜାତିକୁ ପୁନର୍ଜୀବିତ କରିବାପାଇଁ ଯେଉଁ ମହାନ ବ୍ୟକ୍ତିତ୍ୱଗଣ ଜୀବନରେ ଅକ୍ଳାନ୍ତ ସାଧନା ଓ ତ୍ୟାଗ କରି ଯାଇଅଛନ୍ତି, ସେହିମାନଙ୍କ ବିଷୟରେ ସେମାନେ ଜାଣିବେ ଅବା କିପରି ? ବାସ୍ତବିକ ନୀଳମଣି ବିଦ୍ୟାରତ୍ନ ଏହି ଭାବରେ ଅନ୍ୟତମ ଅବହେଳିତ ଓ ବିସ୍ମୃତପ୍ରାୟ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଜାତିର ଘୋର ବିପର୍ଯ୍ୟୟ କାଳରେ ତାଙ୍କପରି କର୍ମବୀରଙ୍କର ଆବିର୍ଭାବ ଥିଲା ଅତ୍ୟନ୍ତ ସୌଭାଗ୍ୟର ବିଷୟ । ତେଣୁ ଓଡ଼ିଆ ଭାଷା କେବଳ ମୃତ୍ୟୁମୁଖରୁ ଉଦ୍ଧାର ପାଇଲା ନାହିଁ, କାଳକାଳ ଧରି ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆ-ଅଧିବାସୀମାନେ ଏକଜ ହେବାର ସ୍ୱପ୍ନ ଦେଖି ପାରିଥିଲେ ଏବଂ ସେହି ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟରେ ସଂଗ୍ରାମ କରିଥିଲେ 'ଉତ୍କଳ ସମ୍ମିଳନୀ' ନେତୃତ୍ୱରେ । ନୀଳମଣି ବିଦ୍ୟାରତ୍ନଙ୍କ ମାନସ ପ୍ରସୂତ ୧୯୦୩ ସାଲର ଏପ୍ରିଲ ମାସର ଗଞ୍ଜାମ ସମ୍ମିଳନୀରୁ ପ୍ରବଳ ଭାବରେ ଅନୁପ୍ରେରିତ ହୋଇ ଉତ୍କଳଗୌରବ ମଧୁସୂଦନ ଦାସ ପ୍ରତିଷ୍ଠା କଲେ "ଉତ୍କଳସମ୍ମିଳନୀ" ୧୯୦୩ ମସିହା ଡିସେମ୍ବର ମାସରେ ।

ଊନବିଂଶ ଶତାବ୍ଦୀରେ ନୀଳମଣିଙ୍କ ସମ୍ପାଦିତ "ସମ୍ବଲପୁର ହିତୈଷିଣୀ" ଓଡ଼ିଆମାନଙ୍କର ଦାବି ହାସଲ କରିବାପାଇଁ ଚହଳ ସୃଷ୍ଟି କରିଥିଲା । ପରବର୍ତ୍ତୀ କାଳରେ ତାଙ୍କ ସମ୍ପାଦନାରେ "ପ୍ରଜାବନ୍ଧୁ" "ଉତ୍କଳ ମଧୁପ" ପ୍ରଭୃତି ଜାତୀୟ

ଜାଗ୍ରତ ପାଇଁ ଅଗ୍ରବର୍ତ୍ତୀ ଭୂମିକା ଗ୍ରହଣ କରିଥିବା ଜଣାଯାଏ । ନୀଳମଣିଙ୍କ ସମ୍ପାଦିତ "ଗଞ୍ଜାମ ଗୁଣଦର୍ପଣ" ଥିଲା ଦେଶମିଶ୍ରଣ ଆନ୍ଦୋଳନର ପ୍ରମୁଖ ମୁଖପତ୍ର । ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ ହିନ୍ଦୀ ଓ ତେଲୁଗୁ ଭାଷାର ପ୍ରବଳ ଆକ୍ରମଣରୁ ଓଡ଼ିଆ ଭାଷାକୁ ରକ୍ଷା କରିବାରେ ନୀଳମଣିଙ୍କର ଲେଖନୀର ସଂଗ୍ରାମ ଥିଲା ଅବିସ୍ମରଣୀୟ । ସେ ପୁଣି ଥିଲେ ସମାଜ ସଂସ୍କାରକ । ସ୍ୱଗ୍ରାମ ସହରରେ "ବିଧବାଶ୍ରମ" ପ୍ରତିଷ୍ଠା ପାଇଁ ସେ ପ୍ରଥମ ଉଦ୍ୟମ କରିଥିଲେ ଦକ୍ଷିଣ ଓଡ଼ିଶାରେ ରକ୍ଷଣଶୀଳ ବ୍ରାହ୍ମଣ ସମାଜରେ ସଂସ୍କାର ଆଣିବା ପାଇଁ ତାଙ୍କର ଉଦ୍ୟମରେ ପ୍ରତିଷ୍ଠା କରାଯାଇଥିଲା "ଖଲ୍ଲିକୋଟ ବ୍ରାହ୍ମଣ ସମିତି ।"

ସେ ନିଜେ ଦରିଦ୍ର ଥିଲେ । ଅଭାବ ତାଙ୍କୁ ସର୍ବଦା ଅନୁସରଣ କରି ବୁଲୁଥିଲା । ତଥାପି ଅନ୍ୟକୁ ସାହାଯ୍ୟ କରିବାପାଇଁ ସେ ହେଉଥିଲେ ସର୍ବଦା ଆଗଭର । ଏହି ପ୍ରସଙ୍ଗରେ ଦୁଇଟି ଘଟଣା ବିଶେଷ ଉଲ୍ଲେଖନୀୟ । ସାମନ୍ତ-ଚନ୍ଦ୍ରଶେଖର ଓରଫ ପଠାଣି ସାମନ୍ତ ଏବଂ ନାଟ୍ୟକବି ଅଭିମନ୍ୟୁଙ୍କୁ ସାହାଯ୍ୟ କରିବା ପାଇଁ ସେ ଓଡ଼ିଶାର ରାଜନ୍ୟବର୍ଗଙ୍କୁ ପ୍ରାର୍ଥନା କରି ସଫଳକାମ ହୋଇ-ପାରିଥିଲେ । ସେ ନିଜେ ଜଣେ ସାହିତ୍ୟସେବୀ ଓ ଶକ୍ତିଶାଳୀ ସମ୍ପାଦକ ଥିଲେ । ତାଙ୍କ ପତ୍ରିକାରେ ଓଡ଼ିଶାର ତତ୍କାଳୀନ ଶକ୍ତିଶାଳୀ ଲେଖକମାନଙ୍କର ଲେଖା ପ୍ରକାଶିତ ହେଉଥିଲା । ନୂତନ ଲେଖକମାନଙ୍କୁ ଉତ୍ସାହିତ କରିବାପାଇଁ ବିଦ୍ୟାରତ୍ନଙ୍କ ପ୍ରଚେଷ୍ଟା ବାସ୍ତବିକ ଅନୁକରଣୀୟ ।

କବିଶେଖର ଚିନ୍ତାମଣିଙ୍କ ଭାଷାରେ—"କବି ଗଙ୍ଗାଧର ବିଦ୍ୟାରତ୍ନଙ୍କ-ଠାରେ ନାନା ଭାବରେ ଋଣୀଥିଲେ । ତତ୍ପ୍ରଣୀତ କେତେକ ପ୍ରାଥମିକ କବିତାର ରସାସ୍ୱାଦନ କରି ବିଦ୍ୟାରତ୍ନ ସେଗୁଡ଼ିକ ପ୍ରଥମେ ତାଙ୍କ ପତ୍ରିକାସ୍ଥ କଲେ ଏବଂ ଗଙ୍ଗାଧରଙ୍କ ଠାରେ ଯେଉଁ ଶକ୍ତି ନିହିତ ଥିଲା, ତାହାର ଭୂୟସୀ ପ୍ରଶଂସା କଲେ । ବିଦ୍ୟାରତ୍ନଙ୍କର ଏହି ଉତ୍ସାହବାଣୀରେ ଗଙ୍ଗାଧର ଉତ୍ସାହିତ ହୋଇ ଇନ୍ଦୁମତୀ, କୀଚକବଧ ପ୍ରଭୃତି ଲେଖିବାକୁ ଆରମ୍ଭ କଲେ । ସେ ଗଙ୍ଗାଧରଙ୍କ ଅସାଧାରଣ ଶକ୍ତିରେ ଚମକିତ ହୋଇ ନାନା ଚେଷ୍ଟାରେ ସେଗୁଡ଼ିକ ପ୍ରକାଶ କରାଇ ଓଡ଼ିଶାବାସୀଙ୍କ ଧନ୍ୟବାଦାର୍ହ ହୋଇଅଛନ୍ତି ।" (ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ପ୍ରବନ୍ଧ) ନିଜର କୃତଜ୍ଞତା ଜଣାଇ ଚିନ୍ତାମଣି ଲେଖିଥିଲେ ବିଦ୍ୟାରତ୍ନଙ୍କ ବିଷୟରେ—"ଏହି ସମୟରେ ମୋର ପ୍ରଥମ ପୁସ୍ତକ "ମୋହିନୀ" ପ୍ରକାଶିତ ହେଲା । ଦେବ ହୃଦୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସହାୟତାରେ ଏବଂ ଗୁଣରାଶି ବାମଣ୍ଡାରାଜା ସଚ୍ଚିଦାନନ୍ଦ ଦେବଙ୍କ ଅର୍ଥାନୁକୂଲ୍ୟରେ ହିତୈଷିଣୀ ପ୍ରେସରେ "ମୋହିନୀ" ଛପା ହୋଇ ଆସିଲା । ସଚ୍ଚିଦାନନ୍ଦ ଦେବ ସେତେବେଳେ

ଯୁବରାଜ ଥିଲେ । ବିଦ୍ୟାରତ୍ନ ମୋତେ ଖାଲି ଉତ୍ସାହ ଦେଇ କ୍ଷାନ୍ତ ହୋଇ ନ ଥିଲେ— ନାନା ଭାବରେ ମୋର ଉନ୍ନତି ଏବଂ ଉପକାର କରି ମୋତେ ଚିରଋଣୀ କରିଯାଇ ଅଛନ୍ତି । ଘଟଣାକ୍ରମେ ମୋର ଜୀବନପଞ୍ଜିକାର ଅନେକ ସ୍ଥାନରେ ତାଙ୍କର ପବିତ୍ର ନାମ ଲିଖିତ ରହିବ । କାହାରଠାରୁ ମୋର କିଛିଏ ପ୍ରଶଂସା ଶୁଣିଲେ ସେ ଆନନ୍ଦମୋହିତ ହୋଇ ମୋତେ ତାହା ପତ୍ରଦ୍ୱାରା ଜଣାଇ ଦେଉଥିଲେ ।"  (ଜୀବନପଞ୍ଜିକା-ପୃ ୫୩)

"ପଣ୍ଡିତ ନୀଳମଣି ବିଦ୍ୟାରତ୍ନ" ପ୍ରବନ୍ଧରେ ଚନ୍ଦ୍ରାମଣି ଯଥାର୍ଥରେ ଲେଖିଥିଲେ ଯେ—"ଉତ୍କଳ ସାହିତ୍ୟର ସେବା ଓ ଉତ୍କଳ ଦେଶର ସେବା ନୀଳମଣିବାବୁଙ୍କ ଜୀବନର ମୁଖ୍ୟତମ ବ୍ରତ ଥିଲା । ସେ ନିଜର କ୍ଷମତାନୁସାରେ ସେହି ବ୍ରତ ଯଥାସାଧ୍ୟ ପାଳନ କରିଅଛନ୍ତି ଏବଂ ସେହି ବ୍ରତ ପାଳନରେ ହିଁ ସେ ନିଜର ସମଗ୍ର ଶକ୍ତି ଅର୍ପଣ କରି ଯାଇଅଛନ୍ତି । ସେ ତାଙ୍କ ଜୀବନରେ ସାହିତ୍ୟ ସେବା, ଦେଶସେବା କାର୍ଯ୍ୟ କଲାପରି ଅଉ କୌଣସି କାର୍ଯ୍ୟ କରିନାହାନ୍ତି ।"

ସେ ଯେଉଁଠାରେ ଅବସ୍ଥାନ କରୁଥିଲେ, ସେଠାରେ ଶିକ୍ଷା ସଂସ୍କାର, ସମାଜ ସଂସ୍କାର, ଶାସନ ସଂସ୍କାର, ସାହିତ୍ୟ ସେବା ଓ ପ୍ରତିଭାପୂଜା କରିବାପାଇଁ ଅହରହ ଧ୍ୟାନ ଦେଉଥିଲେ ।

ଦେଶମିଶ୍ରଣ ଆନ୍ଦୋଳନରେ ନୀଳମଣିଙ୍କର ନେତୃତ୍ୱ ଥିଲା ଅତ୍ୟନ୍ତ ପ୍ରଭାବଶାଳୀ । ଏଥିପାଇଁ ଅଣଓଡ଼ିଆ ଅଧିବାସୀର ନେତୃମଣ୍ଡଳୀ ତାଙ୍କର ଭୟଙ୍କର ବିପକ୍ଷବାଦୀ ହୋଇଉଠିଥିଲେ । ଏଥିରେ ନୀଳମଣି ଅଧିକ ଉତ୍ସାହିତ ହୋଇଥିଲେ ଆନ୍ଦୋଳନ ବଞ୍ଚାଇ ରଖିବା ପାଇଁ । ନିଜର ଅନୁଭୂତିରୁ ଚନ୍ଦ୍ରାମଣି ଲେଖିଥିଲେ— "କିଛିଦିନ ପରେ ଦେଶମିଶ୍ରଣ ଆନ୍ଦୋଳନ ଆରମ୍ଭ ହେଲା । ସମଗ୍ର ଗଞ୍ଜାମ ଜିଲ୍ଲା କମ୍ପି ଉଠିଲା । ଉତ୍ସାହ, ଉତ୍ତେଜନାର ବହୁମୁଖୀ ଧାରା ପ୍ରବାହିତ ହେଲା । ଓଡ଼ିଆ, ତେଲଙ୍ଗା ଉଭୟ ପକ୍ଷରୁ ସ୍ୱାକ୍ଷର ସଂଗ୍ରହ ଚାଲିଲା । କୂଟ, କପଟ, ଛଳନା, ଗୁପ୍ତଗିର ଅସ୍ତ୍ରସ୍ତ୍ର ନିଆଗଲା । ତେଲେଙ୍ଗାମାନେ ଦେଶମିଶ୍ରଣ ବିପକ୍ଷରେ ଲାଗିଲେ । ନାନା ଅସଦୁପାୟରେ ସ୍ୱାକ୍ଷର ସଂଗ୍ରହ କରିବାକୁ ସେମାନେ ଦ୍ୱିଧାବୋଧ କରି ନ ଥିଲେ । ସେଥିର ପ୍ରମାଣ ମୁଁ ପ୍ରତ୍ୟକ୍ଷରେ ଦେଖିଅଛି । ହାଡ଼ିଆଣୀ ରାସ୍ତା ସଫା କରୁଥାଏ । ଜଣେ କର୍ମଚାରୀ ଆସି ପଚାରିଲେ—"ଏ ଓଡ଼ିଆଣି ମାଇକିଣା, ତୁ ବରଂପୁରରେ ରହିବେ, ନା କଟାକାମ୍ ଯିବେ ।" ସେ କହିଲା, "କି ଆସ୍ତା । ମୁଁ ଘର ଛାଡ଼ି କଟକ କାହିଁକି ଯିବି ?" ଏତିକରେ ହାଡ଼ିଆଣୀର ଦେଶମିଶ୍ରଣର ଇଚ୍ଛା ନାହିଁ ବୋଲି ସାବ୍ୟସ୍ତ କରି ତାର ନାମଧାମ ଲେଖିନେଲେ । ଏହିପରି

ମଫସଲରୁ ଆସିଥିବା ଶଗଡ଼ିଆ, ବେପାରୀ ପ୍ରଭୃତି ନିରକ୍ଷର, ନିର୍ବୋଧ ଲୋକ-ମାନଙ୍କର ସ୍ୱୀକୃତି ନିଆଗଲା । "ଓଡ଼ିଶାର ପୋଲିସ ବଡ଼ ଗରମ, ହାକିମମାନେ, ପ୍ରମାଣ ନ ନେଇ ମନକୁ ମକଦ୍ଦମା ଡିଗ୍ରୀ, ଡିସ୍‌ମିସ୍ କରିଦିଅନ୍ତି । ଓଡ଼ିଶାର ଭୂମିକର ଅଧିକ," ଏହିପରି ମିଥ୍ୟା କଥା କହି ନିରୀହ ଓଡ଼ିଆମାନଙ୍କୁ ଭୟ ଦେଖାଇବାକୁ ହେଲା । ଏସବୁ କଥା "ପ୍ରଜାବନ୍ଧୁ" (ସମ୍ପାଦକ ନୀଳମଣି ବିଦ୍ୟାରତ୍ନ)ରେ ବାହାରିଲା ଏବଂ ତୀବ୍ର ପ୍ରତିବାଦ କରାଗଲା । କେବଳ ଦେଶ ମିଶ୍ରଣ ସମସ୍ୟାରେ ପତ୍ରିକାର କଳେବର ପୂର୍ଣ୍ଣ ହେଲା । ନୀଳମଣି ବିଦ୍ୟାରତ୍ନ ଶତହସ୍ତ ହୋଇ ଆନ୍ଦୋଳନରେ ଲାଗିପଡ଼ିଲେ ।"

(ଜୀବନପଞ୍ଜିକା—ପୃ ୧୦୮-୧୦୯)

ନୀଳମଣି ବିଦ୍ୟାରତ୍ନ ଥିଲେ ଅତ୍ୟନ୍ତ ବନ୍ଧୁବତ୍ସଳ । ଅତିଥିଟିଏ ପାଇଲେ ସେ ବିମଳ ସୁଖ ଅନୁଭବ କରି ନାନାଭାବରେ ଆପ୍ୟାୟିତ କରିବାକୁ ଯତ୍ନବାନ ହେଉଥିଲେ । ଏହିପରି ଏକ ମଧୁର ଅନୁଭୂତି ରୂପାୟିତ ହୋଇଅଛି ଚନ୍ଦ୍ରାମଣିଙ୍କ ଲେଖାରେ—"ବଡ଼ଖେମୁଣ୍ଡିରେ ମାସେ କାଳ କଟିଗଲା । ମୁଁ ଅନେକଥର ଦାହାରିଲି, ମାତ୍ର ବିଦ୍ୟାରତ୍ନ କାଲିଯିବ ବୋଲି କହି ଅଟକାଇ ରଖନ୍ତି । ଏହିପରି କେତେଟା କାଲି ଫେଲ୍ ହେଲା ପରେ ଶେଷରେ ଯେଉଁ କାଲିଟା ଆସିଲା, ସେ ଶଙ୍ଖଚିଲ ମୁହଁ ଗୁହଁ ଆସିଥିଲା, ତାହାର କପାଳରେ ରାଜଟୀକା ଲେଖାଥିଲା । ତାହାର ଏକାଦଶ ବୃହସ୍ପତି ହୋଇଥିଲା, କି ସେ କି କଠିନ ତପସ୍ୟା କରିଥିଲା କେଜାଣି ସେହି କାଲିଟା ବିଦ୍ୟାରତ୍ନଙ୍କ ଅନୁଗ୍ରହରୁ ବଞ୍ଚିତ ହେଲା ନାହିଁ । ମୁଁ ଖଣ୍ଡେ ଗାଡ଼ିରେ ବସିଲି, ବିଦ୍ୟାରତ୍ନେ ଖଣ୍ଡିକରେ ବସି ମୋତେ ବାଟେଇ ଦେବାକୁ ବାହାରିଲେ । ବାଟେଇ ଦେବାଟା ଗଛମୂଳେ, ନଈକୂଳ ବା ଗ୍ରାମ ସୀମାଯାଏ ନୁହେଁ – ସୁଦୀର୍ଘ ଷୋଳମାଇଲ ପଥ ସୁଦୀର୍ଘ ବ୍ରହ୍ମପୁର ପର୍ଯ୍ୟନ୍ତ ।"

(ଜୀବନ ପଞ୍ଜିକା – ପୃ ୮୪)

ବିଦ୍ୟାରତ୍ନଙ୍କର କର୍ମକ୍ଷେତ୍ର ଥିଲା ସୁଦୂର ପ୍ରସାରୀ । ସେ କେବଳ ପତ୍ରିକା ସମ୍ପାଦନ କରି ସନ୍ତୁଷ୍ଟ ରହି ନଥିଲେ । ଜାତୀୟ ଜୀବନର ଉନ୍ମେଷ କରିବାପାଇଁ ତାଙ୍କର ଲେଖନୀ ଥିଲା ଅନବରତ ଚଳଚଞ୍ଚଳ । ନାନା କାରଣ ତତ୍କାଳୀନ ଇଂରେଜ ସରକାର ଓଡ଼ିଶାରେ ଶିକ୍ଷାର ବିସ୍ତାର ପାଇଁ ବିଶେଷ ଆଗ୍ରହୀ ନ ଥିଲେ । ପୁଣି ତତ୍ପର ଗଡ଼ଜାତ ରାଜ୍ୟରେ ମଧ୍ୟ ଶାସକଗଣ ଏହିପ୍ରକାର ମନୋଭାବ ପୋଷଣ କରୁଥିଲେ । ନୀଳମଣି ବିଦ୍ୟାରତ୍ନ ଅନୁଭବ କଲେ—ଯେକୌଣସି ପ୍ରକାରେ ଲୋକମାନଙ୍କ ମଧ୍ୟରେ ଶିକ୍ଷାର ବିସ୍ତାର ହେବା ଆବଶ୍ୟକ । ଲୋକେ ଶିକ୍ଷା ଲାଭ

ନ କଲେ ସଚେତନ ହେବେ ନାହିଁ ଏବଂ ନୂତନ ସଭ୍ୟତାର ଆଗମନକୁ ଯେ କୌଣସି ପ୍ରକାରେ ସ୍ୱାଗତ କରିବାକୁ ହେବ ।

ଶିକ୍ଷା ସମ୍ବନ୍ଧେ ଔଦାସୀନ୍ୟକୁ କଠୋର ସମାଲୋଚନା କରି ସେ ଲେଖିଥିଲେ—"ଶିକ୍ଷା ସକଳ ଉନ୍ନତିର ମୂଳ ଅଟଇ । ଶିକ୍ଷା ବିହୀନ ଲୋକ ପଶୁତୁଲ୍ୟ ଅଟଇ । ଅନଭିଜ୍ଞ ଲୋକମାନଙ୍କର କାଣ୍ଡଜ୍ଞାନ ଜନ୍ମଇ ନାହିଁ । ସୁତରାଂ ସେମାନେ କ୍ଷଣକ୍ଷଣକେ ନାନାବିଧ ଅନିଷ୍ଟଜନକ ଘଟଣା ଘଟାଇ ବସନ୍ତି । ଏପରି-ସ୍ଥଳେ ଶିକ୍ଷା ବିସ୍ତାର ବିଷୟରେ କାହାରି ଅଯତ୍ନ କରିବା କଦାପି ଉଚିତ୍ ନୁହଇ ।

(ସମ୍ବଲପୁର ହିତୈଷିଣୀ—୧୪-୯-୧୮୯୨)

ସେହିପରି ଓଡ଼ିଆ ଭାଷାର ଅନାଦର ତାଙ୍କୁ ମର୍ମେ ମର୍ମେ ଆଘାତ ପ୍ରଦାନ କରୁଥିଲା । ପ୍ରବାସୀଙ୍କ ଚକ୍ରାନ୍ତରେ ଓଡ଼ିଆମାନେ ଓଡ଼ିଆ ଭାଷା ଶିକ୍ଷାରୁ ବଞ୍ଚିତ ହେଉଥିଲେ । ସେଥିପାଇଁ ବାରମ୍ବାର ଲେଖନୀ ଚଳାଇଥିଲେ । "ସମ୍ବଲପୁର ହିତୈଷିଣୀର ୧୩-୨-୧୮୯୫ ସଂସ୍କରଣରେ ସେ ଲେଖିଥିଲେ—"ଓଡ଼ିଆ ଭାଷାର ଅନାଦର ଓ ଲାଞ୍ଛନା କେବେ ଦୂର ହେବାକୁ ନାହିଁ । ଗଞ୍ଜାମ, ମେଦିନୀପୁର, ସିଂହଭୂମି ଜିଲାର ଅସଂଖ୍ୟ ଓଡ଼ିଆ ମାତୃଭାଷା ହରାଇ ବସିଅଛନ୍ତି । ବର୍ତ୍ତମାନ ସମ୍ବଲପୁରର ଓଡ଼ିଆ ଭାଇମାନେ ଓଡ଼ିଆ ଭାଷା ହରାଇବାକୁ ବସିଅଛନ୍ତି । ଏ ସମ୍ବାଦରେ ଓଡ଼ିଆ ପୁଅମାନେ କେତେଦୂର ଦୁଃଖିତ ଏବଂ ମର୍ମାହତ । ତାହା ବଚନ ଦ୍ୱାରା ବ୍ୟକ୍ତ କରି ହେବ ନାହିଁ ।"

ଶିକ୍ଷାର ପ୍ରସାର ଦିଗରେ ବିଦ୍ୟାରତ୍ନ ମହୋଦୟ କିପରି ସଯତ୍ନ ପ୍ରୟାସ ଜାରି ରଖିଥିଲେ, ତାହା ଚିନ୍ତାମଣି ମହାନ୍ତି ଅତ୍ୟନ୍ତ ଚମତ୍କାର ଭାବରେ ବର୍ଣ୍ଣନା କରି ଯାଇଅଛନ୍ତି । ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ପ୍ରବନ୍ଧରେ ସେ ଲେଖିଥିଲେ— ବିଦ୍ୟାରତ୍ନେ କେବଳ ପତ୍ରିକା ପରିଚାଳନାରେ ବ୍ୟାପୃତ ନ ଥାଇ ରାଜ୍ୟର (ବଡ଼ଖେମୁଣ୍ଡି) ବିବିଧ ଉନ୍ନତି ବିଧାନରେ ରାଜାଙ୍କୁ ପ୍ରୋତ୍ସାହିତ କରିବାକୁ ଲାଗିଲେ । ତାଙ୍କରି ଚେଷ୍ଟାରେ ବଡ଼ଖେମୁଣ୍ଡିର ଉ.ପ୍ରା. ସ୍କୁଲ୍ ସେକେଣ୍ଡାରୀ ସ୍କୁଲରେ ପରିଣତ ହୋଇଅଛି ଓ ସେଠାରେ ଗୋଟିଏ ବାଳିକା ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଅଛି । ବିଦ୍ୟାରତ୍ନଙ୍କ ପ୍ରବର୍ତ୍ତନାରେ ରାଜା ମହୋଦୟ ବ୍ରହ୍ମପୁର କଲେଜ ସଂଲଗ୍ନ ଓଡ଼ିଆ ଛାତ୍ରାବାସ ନିର୍ମାଣ ନିମନ୍ତେ ସାତହଜାର ଟଙ୍କା ଦାନ କରିଥିଲେ । ରାଜ୍ୟର ଦରିଦ୍ର ଛାତ୍ରମାନଙ୍କୁ ରାଜକୋଷରୁ ସାହାଯ୍ୟ ଦେଇ ଭିନ୍ନ ଭିନ୍ନ ସ୍କୁଲରେ ପଢ଼ାଉଥିଲେ । ବଡ଼ଖେମୁଣ୍ଡିର ଟାଉନହଲ୍ ଓ ତନ୍ମଧ୍ୟ ଲକ୍ଷ୍ମୀ ନାରାୟଣ ଲାଇବ୍ରେରୀ ବିଦ୍ୟାରତ୍ନଙ୍କ ଚେଷ୍ଟାର ଅନ୍ୟତମ ନିଦର୍ଶନ । "ଦେଶୋନ୍ନତି ଦାୟିନୀ ସମିତି"

ଓ "ଯୁବକ ସମିତି" ନାମକ ଦୁଇଗୋଟି ସମିତି ସେଠାରେ ପ୍ରତିଷ୍ଠିତ କରି ସେଗୁଡ଼ିକର ନିୟମିତ ଅଧିବେଶନରେ ରାଜ୍ୟର ତଥା ଯୁବକ ସମ୍ପ୍ରଦାୟର ସର୍ବବିଧ ଉନ୍ନତି ପାଇଁ ଚେଷ୍ଟା କରୁଥିଲେ । ରାଜାଙ୍କ ଜମିଦାରୀ ସିରସ୍ତାରେ ଓଡ଼ିଆ ଅଙ୍କ ପରିବର୍ତ୍ତେ ଇଂରେଜୀ ଅଙ୍କ ପ୍ରଚଳନ ଥିଲା ଏବଂ ରାଜ-କର୍ମଚାରୀମାନଙ୍କ ମଧ୍ୟରୁ ଅଧିକାଂଶ ତେଲଙ୍ଗୀୟ ଥିଲେ । ସେ ରାଜା ମହୋଦୟଙ୍କୁ ଏଥିର ଅସୁବିଧାମାନ ଦର୍ଶାଇ କ୍ରମେ ସେଠାରୁ ଏହି ଉଭୟ ପ୍ରଥାର ଉଚ୍ଛେଦସାଧନ କରିଥିଲେ । ତାଙ୍କର ଚେଷ୍ଟାରେ ରାଜାମହୋଦୟ ଓଡ଼ିଶାର ପ୍ରଧାନ ପ୍ରଧାନ ସାହିତ୍ୟିକଙ୍କୁ ନିମନ୍ତ୍ରଣ କରି ନେଇ ରାଜୋଚିତ ସମ୍ମାନ ପ୍ରଦାନ କରୁଥିଲେ ।

ନୀଳମଣି ବିଦ୍ୟାରତ୍ନ କେଉଁଦିନୁଁ ଚିରବିଦାୟ ନେଇ ଅରପୁରକୁ ଚାଲିଗଲେଣି । ମାତ୍ର ସେ ଯେଉଁ ବିଷୟରେ ସଂଗ୍ରାମ ଓ ସଂସ୍କାର ଅବ୍ୟାହତ ରଖିଥିଲେ, ତାହା ଏବେ ମଧ୍ୟ ସଫଳ ହୋଇ ପାରିନାହିଁ । ଇଂରେଜମାନଙ୍କ ରାଜତ୍ୱକାଳରେ ଇଂରେଜୀ ଭାଷା ଓ ବେଶପୋଷାକ ପ୍ରତି ଯେତିକି ଆଦର ନ ଥିଲା, ତାର ବହୁଗୁଣ ବର୍ତ୍ତମାନ ଦେଖିବାକୁ ମିଳୁଛି । ନାଗରିକ ଜୀବନରେ ବର୍ତ୍ତମାନର ପିଲମାନେ ଇଂରେଜୀମିଡ଼ିୟମ ସ୍କୁଲକୁ ଅଧିକ ଆଦର ନେଇଛନ୍ତି । ଘରେ ବାହାରେ ପିଲମାନେ ଇଂରେଜୀରେ କଥାଭାଷା ହେବାପାଇଁ ଆଗ୍ରହୀ ହେବା ଦେଖାଯାଉଛି । ଓଡ଼ିଆ ସାହିତ୍ୟର ପାଠକ ସଂଖ୍ୟା କ୍ରମଶଃ କମିବାରେ ଲାଗିଛି । ଜାତୀୟ ଜୀବନରେ ସ୍ୱାଭିମାନ ଓ ଦେଶପ୍ରୀତିର ଅଭାବ ଉପଲବ୍ଧି କରାଯାଉଛି । ରାଜନୀତି ଆଜି ଅତ୍ୟନ୍ତ କଳୁଷିତ । ଲୋକ ପ୍ରତିନିଧି ଜନସେବା ପରିବର୍ତ୍ତେ ଆତ୍ମସେବା କରିବାପାଇଁ ଅଧିକ ତତ୍ପର । ବେକାରୀ, ହତାଶା ଓ ଅର୍ଥନୈତିକ ଅସମାନତା ଏକ ସାମାଜିକ ବ୍ୟାଧି ଭାବରେ ପରିଲକ୍ଷିତ ହେଉଛି । ସାମ୍ବାଦିକତାର ଆଭିମୁଖ୍ୟ ଲୋକଶିକ୍ଷା ପରିବର୍ତ୍ତେ ଆଜି ବ୍ୟକ୍ତିଗତ ପେଶାରେ ରୂପାନ୍ତରିତ । ଏହିପରି ଅବକ୍ଷୟ ଯୁଗରେ ନୀଳମଣି ବିଦ୍ୟାରତ୍ନଙ୍କ ପରି ସମ୍ପାଦକଙ୍କର ଆବଶ୍ୟକତା ଅଧିକ ଅନୁଭୂତ ହୋଇଥାଏ । ତାଙ୍କପରି କର୍ମବୀର ବାସ୍ତବିକ ଇତିହାସ ପୃଷ୍ଠାରେ କ୍ୱଚିତ ଦେଖିବାକୁ ମିଳନ୍ତି ସିନା !!!

---

# ମନମୋହନ ଗ୍ରନ୍ଥାବଳୀ



'କୋଟିକଣ୍ଠେ'ର ବିପ୍ଳବୀ କବି ଶ୍ରୀ ମନମୋହନ ମିଶ୍ର ଆଜି ନାହାନ୍ତି । ମାତ୍ର ତାଙ୍କ ଦୀର୍ଘ ୬୬ ବର୍ଷର ସାହିତ୍ୟ ସାଧନାର ବିପ୍ଳବୀ ଗୀତି କବିତା ଓ ଅଗଣିତ ଆଧୁନିକ କବିତା ଯୁଗଯୁଗ ପାଇଁ ଓଡିଆ ସାହିତ୍ୟରେ ଭାସ୍ୱର ହୋଇ ରହିବ । ତାଙ୍କର ଶେଷ ଇଚ୍ଛା ଅନୁସାରେ ତାଙ୍କର କବିତା ଓ ଲେଖାଗୁଡିକ 'ଗ୍ରନ୍ଥାବଳୀ' ଆକାରରେ ପ୍ରକାଶ କରିବା ପାଇଁ ସ୍ଥିର ହୋଇଛି । ସ୍ୱର୍ଗତ ମିଶ୍ରଙ୍କ ସାଥୀ, ସହଯୋଦ୍ଧା ଓ ତାଙ୍କ କବିତା ଆଦର୍ଶରେ ଅନୁପ୍ରାଣିତ ଅଥବା ତାଙ୍କ ସାହିତ୍ୟ ସାଧନା ଉପରେ ଗବେଷଣା କରିଥିବା ଗବେଷକ ବଂଧୁମାନେ ଏହି ଗ୍ରନ୍ଥାବଳୀ ପ୍ରକାଶନ କାର୍ଯ୍ୟରେ ସକ୍ରିୟ ସହଯୋଗ କରିବାକୁ ଅନୁରୋଧ ।

ସଂପୂର୍ଣ୍ଣ ଗ୍ରନ୍ଥାବଳୀ ୨ ଖଣ୍ଡରେ ପ୍ରକାଶ ପାଇବ । ୧ମ ଖଣ୍ଡ ପଦ୍ୟ ବିଭାଗ ଜୁନ ୨୦୦୧ରେ ଏବଂ ୨ୟ ଖଣ୍ଡ ଗଦ୍ୟ ବିଭାଗ ଡିସେମ୍ବର ୨୦୦୧ରେ ପ୍ରକାଶ ପାଇବ ।

ସଂପାଦକ

ମନମୋହନ ଗ୍ରନ୍ଥାବଳୀ ପ୍ରସ୍ତୁତି କମିଟି